# ବିଂଶ ଶତାବ୍ଦୀର କବିତା



ସଂକଳନ

ଅବନୀ କୁମାର ବରାଳ

# ବିଂଶଶତାବ୍ଦୀର କବିତା

ସଂକଳକ :

**ଅଧ୍ୟାପକ ଅବନୀକୁମାର ବରାଳ**

ପ୍ରାଣନାଥ ମହାବିଦ୍ୟାଳୟ, ଖୋର୍ଦ୍ଧା

ପ୍ରକାଶକ :

**କେ. ମହାପାତ୍ର**

ଚଣ୍ଡୀ ରୋଡ଼, କଟକ

ମୁଦ୍ରକ :
ଜୟରାମ ମହାପାତ୍ର
ଗ୍ରନ୍ଥ ପ୍ରକାଶିନୀ
କଟକ-୧

କଂପୋଜ : ସୁରେନ୍ଦ୍ର କଂପୋଜର୍ସ

ପ୍ରଥମ ମୁଦ୍ରଣ :
୧-୧୦-୭୩

ଦ୍ୱିତୀୟ ମୁଦ୍ରଣ :
ଅଗଷ୍ଟ, ୧୯୭୫

ତୃତୀୟ ମୁଦ୍ରଣ :
ଜୁଲାଇ, ୧୯୭୭

ମୂଲ୍ୟ ୮୫.୦୦

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|
| ୨୨ । ଗୃହଳ, ଗୃକର, ଗୃଷ | ଗୋଦାବରୀଶ ମହାପାତ୍ର | ୫୯ |
| ୨୩ । ମଲଟ | ଗୋଦାବରୀଶ ମହାପାତ୍ର | ୬୧ |
| ୨୪ । କବ ପ୍ରତ | ସଚ୍ଚିଦାନନ୍ଦ ରାଉତରାୟ | ୬୩ |
| ୨୫ । ରେଂଗୁନଯାତ୍ରୀ | ସଚ୍ଚିଦାନନ୍ଦ ରାଉତରାୟ | ୭୦ |
| ୨୬ । ଏ କ ଡାକ ଆଜ | ଅନନ୍ତ ପଟ୍ଟନାୟକ | ୭୪ |
| ୨୭ । ସ୍ୱପ୍ନ ଦେଖୁଚ | ଅନନ୍ତ ପଟ୍ଟନାୟକ | ୭୭ |
| ୨୮ । ଆଜ ଏ ରୁପାର ଇସ୍ପାତ୍ରୀରେ | ରାଧାମୋହନ ଗଡ଼ନାୟକ | ୮୦ |
| ୨୯ । ଅସ୍ଥି ପୃଥ୍ୱୀ | ରାଧାମୋହନ ଗଡ଼ନାୟକ | ୮୬ |
| ୩୦ । ଯନ୍ତନନଗର | କୁଞ୍ଜବିହାରୀ ଦାଶ | ୮୯ |
| ୩୧ । ନମସ୍କାର କର | ମନମୋହନ ମିଶ୍ର | ୯୩ |
| ୩୨ । ମୁଁ | କୃଷ୍ଣଚନ୍ଦ୍ର ତ୍ରିପାଠୀ | ୯୬ |
| ୩୩ । ଏ ପୃଥିବୀ | ବିନୋଦଚନ୍ଦ୍ର ନାୟକ | ୯୭ |
| ୩୪ । ବାମପଥ | ହରିନନ୍ଦ ବର୍ମା | ୧୦୦ |
| ୩୫ । ଅଳକା ସାନ୍ୟାଲ | ଗୁରୁପ୍ରସାଦ ମହାନ୍ତି | ୧୦୩ |
| ୩୬ । ବେଙ୍ଗ | ଚିନ୍ତାମଣି ବେହେରା | ୧୦୬ |
| ୩୭ । ହାର୍ | ବେଣୁଧର ରାଉତ | ୧୧୧ |
| ୩୮ । ବଣଭୋଜ | ଜାନକୀବଲ୍ଲଭ ମହାନ୍ତି | ୧୧୪ |
| ୩୯ । ମାଷ୍ଟ୍ରାଣୀ | ରମାକାନ୍ତ ରଥ | ୧୧୬ |
| ୪୦ । ନଈ ମୁହାଣ | ସୀତାକାନ୍ତ ମହାପାତ୍ର | ୧୨୦ |
| ୪୧ । ଗୋଟିଏ ନିବେଦନ | ବ୍ରଜନାଥ ରଥ | ୧୨୫ |
| ୪୨ । ଦ୍ୱିପ୍ରହର | ସୌଭାଗ୍ୟକୁମାର ମିଶ୍ର | ୧୨୭ |
| ୪୩ । ଲୁଲୁପାଇଁ ଏକ ଲଲବାଇ | ନୃସିଂହକୁମାର ରଥ | ୧୨୯ |
| ୪୪ । ଭୁଲ୍ | ବ୍ରହ୍ମୋତ୍ରୀ ମହାନ୍ତି | ୧୩୧ |

# ପ୍ରାକ୍‌କଥନୀ

●

ଜୀବନର ଧାରା ଯେପରି ଅବିଚ୍ଛିନ୍ନ ଓ ଚଳମାନ, ଜୀବନରୁ ଉଦ୍ଭୂତ କବିତାର ଧାରା ମଧ୍ୟ ସେହିଭଳି ପ୍ରବହମାନ, ଗତିଶୀଳ, ଏକ ସ୍ରୋତସ୍ୱତୀର ଧାରା ଭଳି । ଓଡ଼ିଆ କବିତା ମଧ୍ୟ ଏହି ସତ୍ୟର ବ୍ୟତିକ୍ରମ ହୋଇନପାରେ । ଯେକୌଣସି ଏକ ନିର୍ଦ୍ଦିଷ୍ଟ ସମୟକାଳର ପରିଧିର ଜୀବନ ଓ ସମାଜ ତାର ପରମ୍ପରାଦ୍ୱାରା ପରିପୁଷ୍ଟ ଓ ପୁଣି ପରମ୍ପରା ତଥା ଗତାନୁଗତିକତାକୁ ଭାଙ୍ଗି-ରୁଜି, ନୂଆ ରୂପବିଭବ, ପ୍ରାଣପ୍ରାଚୁର୍ଯ୍ୟରେ ଭରପୂର ହୋଇ ଆଗେଇଯାଏ —ନୂଆ ଜୀବନକୁ, ନୂଆ ପରିବର୍ତ୍ତନକୁ, ନୂଆ ଚିନ୍ତାଧାରାକୁ ଆଦରିନିଏ । ମାତ୍ର ଏ ନୂଆ ରୂପ, ନୂଆ ଧାରା, ସାମଗ୍ରିକ ଭାବରେ ଚଳମାନ ଗତିଶୀଳ ଜୀବନସ୍ରୋତର ବ୍ୟତିକ୍ରମ ନୁହେଁ । ବିଂଶ ଶତାବ୍ଦୀର ମଣିଷ ସମଗ୍ର ସମାଜର ପ୍ରବାହମାନ ଧାରାର ଉତ୍ତରପୁରୁଷ; ମାତ୍ର ରୂପରେ, ଭେକରେ ତଥା ସାମଗ୍ରିକ ଜୀବନ-ଚେତନାରେ ଏହା ଉତ୍ତରକାଳର ମଣିଷସମାଜଠାରୁ ସତେ ଯେପରି ବିଚ୍ଛିନ୍ନ ! ଭିନ୍ନ ରୂପବିଭବ ଓ ଆଙ୍ଗିକ ବିଭବ ନେଇ ଯେପରି ଏକ ନୂଆ ମଣିଷ !

ସାଧାରଣ ଭାବରେ କହିଲେ, ବିଂଶ ଶତାବ୍ଦୀର ସମୟକାଳର ପରିଧିର ଯେକୌଣସି ମଣିଷ ବା ଗୋଷ୍ଠୀ, ତାର ବା ସେମାନଙ୍କର, ପିତୃପୁରୁଷଙ୍କର ପରମ୍ପରାର ପରିଚୟ ବହନ କରେ ଏବଂ ଗ୍ରନ୍ଥିରେ ବହନ କରେ ସେହି ଅବିଚ୍ଛିନ୍ନ ରକ୍ତର ଧାରା । କିନ୍ତୁ ତାର ଏକକ ସତ୍ତାରେ ବା ଗୋଷ୍ଠୀ-ଚେତନାରେ ସେ ତାର ବାହାରର ରୂପରେ, ବେଶବାସରେ, ତଥା ଅନ୍ତର୍ଗତ ଚିନ୍ତାଧାରାରେ ନିଜର ପିତୃପୁରୁଷଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏକ ସତ୍ତା; ଭିନ୍ନ ଏକ ମଣିଷ !

ଅତୀତର ଶତାବ୍ଦୀମାନଙ୍କରେ ଏହି ପରିବର୍ତ୍ତନର ଧାରା ଧୀର-ମନ୍ଥର ଥିଲା; ଏଣୁ ଦୀର୍ଘ ଶତାବ୍ଦୀକାଳ ମଧ୍ୟରେ ଏ ପରିବର୍ତ୍ତନକୁ ଚିହ୍ନଟ କରିବା ହୁଏତ

ସହଜସାଧ୍ୟ ହେଉନଥିଲା । ମାତ୍ର ବିଂଶ ଶତାବ୍ଦୀ ଭିତରେ ଏହି ପରିବର୍ତ୍ତନ ଦ୍ରୁତତର ଓ ସୁସ୍ପଷ୍ଟ—ଏହା ଏତେ ଦ୍ରୁତତର ଯେ ବିଗତ ଅର୍ଦ୍ଧଶତାବ୍ଦୀ ବା ପଚିଶ ବର୍ଷ ତଳର ମଣିଷର ଆଙ୍ଗିକ ବା ଆତ୍ମିକ ରୂପ ଖୋଜା ଆଜିର ମଣିଷଠାରେ ହୁଏତ ମିଳିବ ନାହିଁ—ମିଳିବା ସମ୍ଭବ ନୁହେଁ ।

ଯାହାକୁ କେତେକ କହୁଛନ୍ତି ବା କହନ୍ତି—"ଗଲାଣି ସେକାଳ ପହ୍ନାଳ"; କିଏ ବା ମାନବଅନ୍ତ ପରିବର୍ତ୍ତନ ଅବଶ୍ୟମ୍ଭାବୀ ବୋଲି ଗ୍ରହଣ କରିନେଇ ।

ଏହି ଦ୍ରୁତ ପରିବର୍ତ୍ତନର କାରଣ ହେଲା ବିଜ୍ଞାନ ଓ ବିଜ୍ଞାନରୁ ଉଦ୍ଭୂତ **'age of reason'** । ଆଗରୁ ସବୁ କଥାକୁ ମଣିଷ ବିଶ୍ୱାସ କରିଯାଉଥିଲା, ସହଜରେ ଗ୍ରହଣ କରିନେଉଥିଲା 'ବିଶ୍ୱାସେ ମିଳଇ ହରି' କହି । କିନ୍ତୁ ଆଜିର ମଣିଷ ବିଜ୍ଞାନ ଓ **reasoning** ଉପରେ ଭିତ୍ତି କରି, କେବଳ ପରୀକ୍ଷିତ ସତ୍ୟକୁ ହିଁ ବିଶ୍ୱାସ କରେ—ଗ୍ରହଣ କରେ; ନୁହେଁ 'ଯାହା ନ ଦେଖିବ ଦୂଇ ନଥିବେ, ପରତେ କରିବ ଗୁରୁ ବଚନେ ।' ଏହି ଶତାବ୍ଦୀ ଦେଖିଛି ଗଣତନ୍ତ୍ର ଓ ମାନବବାଦର ଚରମ ଅଭ୍ୟୁଦୟ; ପୁଣି ଦେଖିଛି ଅନାସ୍ଥିରତା; ବିଶ୍ୱାସହୀନତା ଏବଂ ଯାନ୍ତ୍ରିକତାର ବିପୁଳ ବିକାଶ ମଧ୍ୟରେ ମଣିଷ ଯନ୍ତ୍ର ହୋଇଯିବାର ନିଦାରୁଣ ଯନ୍ତ୍ରଣା । ଦେଖିଛି- ମଣିଷର ଗ୍ରହ-ଗ୍ରହାନ୍ତରକୁ ବିଜୟ କରିବା ଭିତରେ ପ୍ରାଚୀନ ମୂଲ୍ୟବୋଧ, ଯୁଗଯୁଗାନ୍ତରର ଗତାନୁଗତିକ ଚିନ୍ତାଧାରା ଏକ ଧକ୍କାରେ ଧୂଳିସାତ୍ ହୋଇଯିବାର—ପୁଣି ଅନୁଭୋଗ କରିଛି ସେହି ପ୍ରାଚୀନ କ୍ଷୁଧା, ବୁଭୁକ୍ଷାର ଦିଗନ୍ତପ୍ରସାରୀ ଯନ୍ତ୍ରଣା । ଜୀବନ ବ୍ୟାପକ, ବିସ୍ତୀର୍ଣ୍ଣ ହୋଇଛି—ପୁଣି ଜୀବନସୀମା ଭିତରେ ଆବଦ୍ଧ ରହି ଅସୀମକୁ ଯିବାକୁ ବ୍ୟାକୁଳ ଚିତ୍କାର କରୁଛି ।

କବିତା, କବିର ଜୀବନ ପ୍ରତି, ସମାଜ ପ୍ରତି ପ୍ରତିକ୍ରିୟାର ପରିପ୍ରକାଶ ମାତ୍ର । ଏହି ପ୍ରତିକ୍ରିୟା, କବିର ବ୍ୟକ୍ତିତ୍ୱଭେଦରେ ସମାଜ-ଚେତନା ବା ଦୃଷ୍ଟିକୋଣଭେଦରେ ଭିନ୍ନ ହୋଇପାରେ । ମାତ୍ର, ଏକ ସମସାମୟିକ ସମୟର ପରିଧି ଭିତରେ, କବିମାନେ, ସେହି ଏକ ଓ ଅବିଚ୍ଛିନ୍ନ ଧାରାକୁ ହିଁ ପ୍ରକାଶ କରେ; ହୁଏତ କବିର ବ୍ୟକ୍ତିତ୍ୱ ବା ଚେତନାଭେଦରେ ତାହା

ଭିନ୍ନ ହୋଇପାରେ । ଦେଖିବାର ଜିନିଷ ଏକ ହୋଇଥିଲେ, ତାହାକୁ ଦୁଇଜଣ ଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ଭାବରେ ଦର୍ଶନ କଲା ଭଳି ଏକାସମୟର ସମାଜ କବିତାରେ ଭିନ୍ନ ଭିନ୍ନ ଭାବରେ ରୂପ ପାଇପାରେ । ମାତ୍ର ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ବିଶ୍ଳେଷଣ କଲେ, ସମାଲୋଚକ ସେଥିରୁ ସେହି ଏକ ସମୟ ହିଁ ପାଇବା ସ୍ୱାଭାବିକ ।

ବିଂଶ ଶତାବ୍ଦୀର ଓଡ଼ିଆ କବିତା ଏହି ସମାଜ-ସଚେତନତାରୁ ବ୍ୟତିକ୍ରମ ନୁହେଁ । କବି ଓ କବିତାର ଭଲମନ୍ଦ ବିଗ୍ରହର ମାପକାଠି ହେଲା ଜୀବନ ପ୍ରତି କବିର ପ୍ରତିକ୍ରିୟା ପ୍ରକାଶ କରିବାରେ, (ଯେଉଁ ଦୃଷ୍ଟିକୋଣରୁ ହେଉ ପଛେ) କବିର ଆନ୍ତରିକତା ଓ ଜୀବନ ସହିତ ତାର ଘନିଷ୍ଠତା ବା ନିବିଡ଼ ଯୋଗାଯୋଗ । କବି ନିଜର ତୀକ୍ଷ୍ଣ ଅନୁଭୂତି ନେଇ ଓ ଇତର ଲୋକଠାରୁ ଗଭୀରତର ଅନ୍ତର୍ଜ୍ଞାନବୋଧ ନେଇ ଜୀବନକୁ ତଥା ସମାଜକୁ ଦେଖେ । ଏହି ଗଭୀରତାର ଊଣା ବା ଆଧିକ୍ୟ ହିଁ କବି ଓ କବିତାର ସାଧାରଣ ଭାବରେ ଭଲମନ୍ଦ ବୋଲି ବିଗ୍ରହ କରାଯାଇପାରେ ।

ପ୍ରାଚୀନ ଜଣେ ମଣିଷ ନିଜ ଭିତରେ ବଞ୍ଚିବାର ସୁଯୋଗ ପାଉଥିଲା ସ୍ୱଚ୍ଛଳତାର ଜୀବନଯାପନ, ସହଜ ଭାବରେ ଜୀବନକୁ ମରଣ ପର୍ଯ୍ୟନ୍ତ ପୋଷାଣ ନେଇ, 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' କରି, ବଂଶାନୁକ୍ରମେ ବଞ୍ଚାଇ ରଖି, ଏକ ସୁନ୍ଦର ସୀମିତ ପରିସର ଭିତରେ ବଞ୍ଚିପାରୁଥିଲା; ସାଧାରଣ ଭାବରେ ଆଙ୍ଗିକ-ସର୍ବସ୍ୱ ଥିଲା । ମଣିଷର ଆତ୍ମାର ଭାଗବତ ତତ୍ତ୍ୱ ହୁଏତ ଉପଲବ୍ଧି ପାଇଁ ପ୍ରଚେଷ୍ଟା ଥିଲା—ମାତ୍ର ତାହା ମଧ୍ୟ ଏକ ନିର୍ଦ୍ଦିଷ୍ଟ ପାରମ୍ପରିକ ଧାରାରେ—ଏକ ଆଂଗିକ ମଧ୍ୟରେ । ଆତ୍ମିକତାର ଜଞ୍ଜାଳ ବା ଜଟିଳତାର ଅବବୋଧ ତାଙ୍କ ନିକଟରେ ପ୍ରୟୋଜନୀୟ ନଥିଲା ।

ସେ ଆଂଗିକ-ସର୍ବସ୍ୱ ମଣିଷ ଆଜି ଆଉ ନାହିଁ, ଯିଏ କୌଣସି ଗୋଟିଏ ନଗର ବା ପଲ୍ଲୀରେ ଭୂମିଷ୍ଠ ହୋଇ, ସେଇଠାରେ ଶେଷନିଃଶ୍ୱାସ ଛାଡ଼ିଲେ ମଧ୍ୟ, ସେଥିପାଇଁ ଗ୍ଳାନି ବୋଧ କରେ ନାହିଁ । ବିଂଶ ଶତାବ୍ଦୀର ମଣିଷ ପାରମ୍ପରିକ ଛନ୍ଦୋବଦ୍ଧ, ଘାତ-ପ୍ରତିଘାତ-ବିହୀନ ଜୀବନର ଗଣ୍ଡି ଭିତରୁ

ବାହାରିଆସିଛୁ । ନିଜ ମଧ୍ୟରୁ ବାହାରିଆସି, ନିଜକୁ ମୁଁ ଦୂରରୁ ଠିଆହୋଇ ଦେଖିପାରୁଛି, ଉପଲବ୍ଧି କରିପାରୁଛି—ଅନୁଭୋଗ କରିପାରୁଛି । ବିଂଶ ଶତାବ୍ଦୀର ଜୀବନ ସଂଘର୍ଷ-ସଂଘାତ, ଜଟିଳ-ଜଟିଳ, ବହିର୍ମୁଖୀ, ଅନ୍ତର୍ମୁଖୀ, ବିଚିତ୍ର ଓ ବର୍ଣ୍ଣାଢ୍ୟ ।

ସେଇଭଳି ବିଂଶ ଶତାବ୍ଦୀର କବି ବା କବିତା ଆଂଗିକ-ସର୍ବସ୍ୱ ନୁହେଁ —ଆତ୍ମିକସର୍ବସ୍ୱ । ସାମ୍ପ୍ରତିକ ବର୍ତ୍ତମାନ ବହୁଧା ବିଭକ୍ତ, ଜୀବନଧାରାର ସ୍ୱୟଂସଂପୂର୍ଣ୍ଣ ପରିପ୍ରକାଶ ଆଜିର କବିତା । ଭାଷାର ସୁଷମା ଏହାର କାମ୍ୟ ନହେଁ - ଏହା ଭାବର ସୌନ୍ଦର୍ଯ୍ୟଲାଳସୀ । ଏଣୁ ଏଥିରେ ସେହି ଜୀବନବୋଧ ବା ଜୀବନପ୍ରତି ପ୍ରତର୍କିଆ ଅଧିକ ସୁସ୍ପଷ୍ଟ ହୋଇଛି । ସେଇଠାରେ ବା ଯେତେବେଳେ ଆଂଗିକ-ସର୍ବସ୍ୱ ହୋଇ କେବଳ ଆଧୁନିକ ବୋଲିନାମ ଗ୍ରହଣ କରିବାକୁ ଭଲପାଇବସୁଛି, ସେତେବେଳେ ତାହା ମାଟି ଓ ମଣିଷଠାରୁ ଦୂରେଇ ଯାଉଛି ଓ ଯାଇଛି; ସାଧାରଣ ପାଖରେ ଦୁର୍ବୋଧ ହୋଇଛି ।

ବିଂଶ ଶତାବ୍ଦୀର ଏହି ଭାବପ୍ରଧାନତା ଓ ଆତ୍ମିକସର୍ବସ୍ୱତା ଆରମ୍ଭ ହୋଇଛି ରାଧାନାଥଙ୍କଠାରୁ; ଯଦିଓ ରାଧାନାଥଙ୍କ କବିତାରେ ତାହା ସେତେ ବେଶି ସ୍ପଷ୍ଟ ନୁହେଁ । ରାଧାନାଥଙ୍କ ଠିକ୍ ପୂର୍ବବର୍ତ୍ତୀ ଗୀତଯୁଗର କବିତାଗୁଡ଼ିକ ଧୀରେ ଧୀରେ ମଣିଷ ପାଖକୁ ଲାଗି ଲାଗି ଆସିଛନ୍ତି; ଫଳରେ ରାଧାକୃଷ୍ଣଙ୍କ ଦେବତା ଆସନରୁ ଓହ୍ଲାଇ ଆସିଛନ୍ତି ସାଧାରଣ ଦେହଧାରୀ ମଣିଷ ପାଖକୁ । ଅଲୌକିକତାକୁ ପରିହାର କରିଛନ୍ତି—ଯାହା ତାଙ୍କର ପୂର୍ବବର୍ତ୍ତୀ କବିମାନଙ୍କ ପକ୍ଷରେ ସମ୍ଭବ ନଥିଲା । ସେମାନେ ମଣିଷକୁ ଦେବତାରେ ପରିଣତ କରିଛନ୍ତି । ରାଧାନାଥଙ୍କ କବିତାରେ ସାଧାରଣ ମଣିଷର ମନ (ନାରୀର), ଦେଶାତ୍ମବୋଧ, ପ୍ରକୃତି ପ୍ରତି ତାଙ୍କର ନିବିଡ଼ ମମତାବୋଧ ଓ ଭାଗବତବୋଧ ସ୍ପଷ୍ଟ ହୋଇଉଠିଛି । ଏହା ହିଁ ତାର ପରବର୍ତ୍ତୀ ଆଧୁନିକ କବିଙ୍କ କୃତିରେ ପ୍ରକାଶ ପାଇଛି ଓ ପାଉଛି ଭିନ୍ନ ଭିନ୍ନ ଦୃଷ୍ଟିକୋଣରେ— ବିଭିନ୍ନ ରୂପସଂଭାରରେ ।

ରାଧାନାଥଙ୍କ ପରେ ପରେ ଗୋପବନ୍ଧୁ ତଥା କୁନ୍ତଳାକୁମାରୀଙ୍କ କବିତାରେ ସେହି ଦେଶାତ୍ମବୋଧ ଓ ଭାରତବୋଧ ଓ ସମାଜର ତଳସ୍ତରର ମଣିଷଙ୍କ ପ୍ରତି ଦରଦୀ ପ୍ରତିକ୍ରିୟା ସୁସ୍ପଷ୍ଟ । କାରଣ ସେତେବେଳକୁ କେବଳ ଦେଶାତ୍ମବୋଧ ବା ପ୍ରାଦେଶିକତାବୋଧ ନୁହେଁ, ଆନ୍ତର୍ଜାତୀୟତାବାଦ ମଧ୍ୟ ଜନଜୀବନରେ ପ୍ରତିକ୍ରିୟା ପ୍ରକାଶ କଲାଣି । ଏହା କେବଳ ଚିନ୍ତକ ପ୍ରାଚୀନ ମାନବବାଦ ନୁହେଁ । 'ଭାରତର ଦୁର୍ଲଭ ମଣିଷ ଜନମ' ଓ କୁନ୍ତଳା-କୁମାରୀଙ୍କର "ଈଶ୍ୱରଙ୍କଠାରୁ ବଡ଼ ମଣିଷଠାରୁ ମନିଷ ଜନମି ନାହିଁ" ଏହା ଚିନ୍ତନ ଦୃଷ୍ଟିରୁ ଏକ ନୁହନ୍ତି । କିନ୍ତୁ ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠ ଆଦି ସତ୍ୟବାଦୀଗୋଷ୍ଠୀର କବିମାନେ, ନିଜର ମାଟିକୁ ଅତି ନିବିଡ଼ଭାବରେ ଭଲ ପାଉଥିଲେ ଏବଂ ସେମାନେ ଯଥାର୍ଥରେ ଥିଲେ 'ସୋଭେନିଷ୍ଟ' ବା ପ୍ରାଦେଶିକତାବାଦୀ—ଯାହା ଗୋପବନ୍ଧୁଙ୍କର ଥିଓରି ମଧ୍ୟରେ ସୁସ୍ପଷ୍ଟ । ଉତ୍କଳଜନନୀଙ୍କର ଉନ୍ନତି ବିନା ଭାରତର ଉନ୍ନତି କଳନା କରାଯାଇପାରେନା—ଉକ୍ତି ଭିତରେ । ଏମାନେ କେବଳ ଆତ୍ମିକ ଦୃଷ୍ଟିରୁ ରାଧାନାଥଙ୍କର ପରମ ବିରୋଧୀ—ମାତ୍ର ଆଙ୍ଗିକ ଦୃଷ୍ଟିକୋଣରୁ ବିଚାରିଲେ ରାଧାନାଥଙ୍କଠାରୁ କେବଳ ଭାଷାର ସରଳତା ବ୍ୟତୀତ (ଯାହା ସତ୍ୟବାଦୀ କବିଗୋଷ୍ଠୀର ଦେଶପ୍ରତି ଆନ୍ତରିକତାରୁ ଉଦ୍ଭବ), ଅନ୍ୟ ସବୁଥିରେ, ଅଲକ୍ଷ୍ୟରେ ରାଧାନାଥଙ୍କର ହିଁ ଅନୁସରଣ । କାରଣ ସେହିଭଳି ଇଂରାଜୀ କବିତା ବା କାବ୍ୟର କଥା ଆଣିଛନ୍ତି ଏମାନେ; କେବଳ ଉଦ୍ଦେଶ୍ୟ ଭିନ୍ନ ।

ତା' ପରବର୍ତ୍ତୀ ଗୋଷ୍ଠୀ ସବୁଜ-ସାହିତ୍ୟିକମାନେ । ଏମାନେ ଯଥାର୍ଥରେ ରୋମାଣ୍ଟିକ୍ କବି । 'ପ୍ରଳୟପ୍ରେରଣା' ତାଙ୍କର ସେହି ଏକା ରୋମାଣ୍ଟିକ୍ ମନର ଅଭିବ୍ୟକ୍ତି । ତାହା ସବୁଜ-କବିଙ୍କ ନିକଟରେ ସ୍ପଷ୍ଟ ନୁହେଁ ଏବଂ ଜୀବନପ୍ରତି ଯଥାର୍ଥ ପ୍ରତିକ୍ରିୟା ନୁହେଁ । ଏଣୁ ତାକୁ ହିଁ ଖଣ୍ଡନ କରି ସେ ପ୍ରକାଶ କରିଛନ୍ତି—

"ଧ୍ୱଂସେ ମୋର ମନ ନାହିଁ ତ
ସେ ନୁହେଁ ମୋର ବାସନା"

ଓ "ଗୋପନ କର କି ହେବ, ପ୍ରିୟା
ନୁହେଁ ମୁଁ ଝଡ଼ ନୁହେଁ ମୁଁ ଝିଅ
ନୁହେଁ ମୁଁ ଶମଶାନ ଗୋ"— (ଅନ୍ନଦାଶଙ୍କର)
ଏବଂ "ଯିବ ଯାଇ୍ ଦୂରେ ସୁଦୂରେ
ସ୍ୱପନ-ଲୋକେ ଗୋପନପୁରେ" × × ଏ ତାଙ୍କର

ଜୀବନ-ପ୍ରତକ୍ରିୟାର ଯଥାର୍ଥ ପରିପ୍ରକାଶ ।

ତା' ପରବର୍ତ୍ତୀ କାଳରେ ଭାରତବର୍ଷରେ ତଥା ଓଡ଼ିଶାରେ ମଧ୍ୟ ଆନ୍ତର୍ଜାତୀୟତାବାଦ, ସାମ୍ୟବାଦ ଓ ସମାଜାନୁଗ କବିତାର ବାର୍ତ୍ତା ଆସିଛି । ତାହା ସବୁଜ-ଯୁଗର ଦୁଇ ଜଣ ଶ୍ରେଷ୍ଠ କବି କାଳନ୍ଦୀ ଓ ବୈକୁଣ୍ଠଙ୍କୁ ପ୍ରଭାବିତ କରିଛି; ସେଥିପାଇଁ ସେ 'ଆଗାମୀ ଯୁଗର ମୁଁ କବିତା ଲେଖେ ବସି' ତଥା 'ମଣିଷକୁଳରେ ଜନମ ଆମର ନାହିଁ ଜାତି ମାନ'............ ଲେଖିଛନ୍ତି । ସମସାମୟିକ ସମୟକାଳରେ, ମୋହ ଅନୁଚିନ୍ତନ ଓ ପ୍ରତକ୍ରିୟା ଏତେ ସ୍ପଷ୍ଟତର ଯେ, କବିତା ମାଧ୍ୟମରେ ସେତେବେଳେ ପ୍ରକଟିତ ହୋଇଛି, 'କଳା ଜୀବନ ପାଇଁ' ନାଁ 'କବିତା କବିତା ପାଇଁ—'Art for arts sake'ରେ ବିଶ୍ୱାସୀ କବିଙ୍କୁ ଚ୍ୟାଲେଞ୍ଜ କରାଯାଇଛି, 'କମଳବିଳାସୀ', 'ପଦ୍ମଭୃଙ୍ଗ' ବୋଲି ଏବଂ ସମସ୍ତ ବିଳାସମୂଳକ ଧାନଧାରଣା ଉପରେ କୁଠାରାଘାତ କରି କୁହାଯାଇଛି, "ବାଳିପଡ଼େ ତମ ସ୍ୱପନର ସୌଖୀନ ମିନାର"—ଇତ୍ୟାଦି ଭଗବାନଙ୍କ ଉପରେ କେବଳ ସଂଶୟ ଆସିନାହିଁ, ଭଗବାନ୍ ଯେ ପୁଞ୍ଜିବାଦୀ ସାମନ୍ତବାଦୀ ସଭ୍ୟତାର ଶୋଷଣ ପାଇଁ ସୃଷ୍ଟି, ତାହା ପ୍ରକାଶିତ ହୋଇଛି ଅନେକ କବିତାରେ ।

ତା' ପରବର୍ତ୍ତୀ କାଳର କବିତା, ସ୍ୱାଧୀନତା ପ୍ରାକ୍‌କାଳର ଓ ପରବର୍ତ୍ତୀ କାଳର, ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରାକ୍‌କାଳରେ ସାମ୍ୟବାଦ, ଗଣତନ୍ତ୍ର, ସମାଜବାଦ, ସ୍ୱାଧୀନତା, ଦେଶାତ୍ମବୋଧ ଉପରେ ଯେପରି ଅଗଣନ କବିତା ରଚିତ ହୋଇଛି, ଅନ୍ୟାନ୍ୟ କବିତା ସହିତ, ସ୍ୱାଧୀନତା ପରବର୍ତ୍ତୀ କାଳରେ ମୋହଭଙ୍ଗ ସ୍ୱାଧୀନତା ପାଇଁ ସଂଶୟ ଓ ସ୍ୱାଧୀନତା ବା ସାମାଜିକ ପୁନର୍ଗଠନ ସପକ୍ଷରେ କବିତା ରଚିତ ହୋଇଛି ।

ବିଂଶ ଶତାବ୍ଦୀର ଶେଷ ଅର୍କରେ ସାଂପ୍ରତିକ କବିତା, ଆଜିର ସ୍ତ୍ରୀଗଜୀବନ ପ୍ରତି କବିର ପ୍ରତିକ୍ରିୟାର ଯଥାର୍ଥ ଅଭିବ୍ୟକ୍ତି । ଏଥିରେ ବ୍ୟକ୍ତିର ଆଶା-ନିରାଶା, ହତାଶା-ବ୍ୟର୍ଥତା, ସଫଳତା-ବିଫଳତା ଯେପରି ସାର୍ଥକଭାବରେ ପ୍ରତିଫଳିତ, ସେହିଭଳି ଏହି ସମାଜକୁ ଭାଙ୍ଗି ନୂଆ ସମାଜ ଗଢ଼ିବାର ଆକାଂକ୍ଷା ମଧ୍ୟ ପ୍ରତିଫଳିତ । ସମାଜର ବହୁଧା ବିଭକ୍ତ ରୂପ ସମାଜର ବ୍ୟକ୍ତିମାନସର ଅନ୍ତର୍ମୁଖିତା ଓ ବହିର୍ମୁଖିତା ଉଭୟ ଆଜିର କବିତାରେ ପରିସ୍ଫୁଟ ।

• ଜୀବନର ଛନ୍ଦହୀନତା, ଜୀବନରେ ଦୁଃସାହସର ପ୍ରତିଫଳନ ପୁଣି ଜୀବନର ଭୟାବହତା ଉଭୟ କବିତାର ଆଙ୍ଗିକକୁ ଦେଇଛି ଏକ ଅନ୍ତଃସ୍ୱର ବା ଅନ୍ତଃଛନ୍ଦ । ଆଜିର ସମାଜରେ ପରମ୍ପରା ପ୍ରତି ଅନୁରାଗ ଓ ବିରାଗ ସମାନଭାବରେ ପ୍ରତିଫଳିତ କବିତାର ଆଙ୍ଗିକ ଓ ଆତ୍ମିକରେ ମଧ୍ୟ ତାହାର ପରିପ୍ରକାଶ ସୁସ୍ପଷ୍ଟ ।

ନିଜର ଅନ୍ତର୍ମୁଖିତା ତଥା ଅନ୍ତର୍ଦାହ ସଫଳ ଭାବରେ ପ୍ରକାଶ କରିବା ପାଇଁ ବିଂଶ ଶତାବ୍ଦୀର ଶେଷ ଭାଗର କବି ସଚେଷ୍ଟ । ସେଣୁ କବିତାରେ ପରୀକ୍ଷା-ନିରୀକ୍ଷା ନୂତନ ପ୍ରୟୋଗ-ବିଧିର ବିରାମ ନାହିଁ ।

କବିତା ଏକ ପକ୍ଷରେ ବୌଦ୍ଧିକତାକୁ ଯେପରି ଅପେକ୍ଷା ରଖିଛି ଅପର ପକ୍ଷରେ ସେଭଳି ସହଜଭାବରେ ମଣିଷ ନିକଟରେ ପହଞ୍ଚିବାର ପ୍ରଚେଷ୍ଟା ମଧ୍ୟ ଚଳାଇଛି ।

ଏକକଥାରେ, ଆଜିର କବିତା ସାଂପ୍ରତିକ ସମାଜ-ମାନସର ଏକକ ତଥା ବହୁଧା ବିଭକ୍ତ ଜୀବନ ପ୍ରତି ଯଥାର୍ଥ ପ୍ରତିକ୍ରିୟା । ଅଧିକନ୍ତୁ ଆଜିର କବି ନିଜକୁ ମୁକ୍ତଭାବରେ ପ୍ରକାଶ କରିବାରେ ପ୍ରଚେଷ୍ଟ ।

ଦଶହରା, ୧୯୭୩ ମସିହା
ପଲ୍ଟଣପଡ଼ିଆ, ଖୋର୍ଦ୍ଧା

ଅବନୀ କୁମାର ବରାଳ
ରିଡ଼ର ଓ ମୁଖ୍ୟ ଅଧ୍ୟାପକ
ଓଡ଼ିଆ ବିଭାଗ, ପ୍ରାଣନାଥ ମହାବିଦ୍ୟାଳୟ

# ଉତ୍କଳଭାରତୀଙ୍କ ଉକ୍ତି

ଗଙ୍ଗାଧର ମେହେର

ଛନ୍ଦ ବାନ୍ଧୁ ମୋର          କୋମଳ ବସନ
ଅଙ୍ଗକୁ ଯହିଁରେ ନ ହେବ ପୀଡ଼ା,
ହେବ ହେଲେ ହେଉ          ଏମନ୍ତ ଭୂଷଣ
ଯାହା ଯେନ ମୋର ନ ହେବ ବ୍ରୀଡ଼ା ।

ଅଙ୍ଗ ଗୃହିଁ ହେଉ          ଯୋଗ୍ୟ ପରିଚ୍ଛଦ
ପରିଚ୍ଛଦ ଯୋଗୁଁ ନ କାଟ ଦେହ,
କଟା ହେଲେ ହେବ          ଜୀବନେ ବିପଦ
ନ କର ମାତାକୁ ସେପରି ସ୍ନେହ ।

ନଖ ବଢ଼ି ଥିଲେ          କର କରତଳ
ରଞ୍ଜିହେଉ ତହିଁ ଅଳତା ରଙ୍ଗ,
ନାକ ବଡ଼ ଥିଲେ          ତା କଲେ ଛେଦନ
ହେବ ନାହିଁ କି ମୋ ସୌଷ୍ଠବ ଭଙ୍ଗ ?

ରୋଗ ଦେହେ ଥିଲେ          ପ୍ରତିକାର କର
ପ୍ରକୃତିସ୍ଥ ହେଉ ଜୀବନ ମୋର,
ଭିନ୍ନ ବର୍ଣ୍ଣେ ଯଦି          ରଞ୍ଜି କଳେବର
ହେବ ମାତ୍ର ତହିଁ ବୀଭତ୍ସ ଘୋର ।

ତୁମେ ମୋତେ ଯେଉଁ ବେଶରେ ସାଜବ
ସେ ବେଶେ ସାଜିବେ ଜଗତଜନେ,
ତୁମେ ମୋତେ ଯଦି ଯତନେ ମାଜିବ
ମାର୍ଜିତ ଉଜ୍ଜ୍ୱଳ ହେବ ଭୁବନେ ।

ଦେଇ ଦେଇ ମୋର ନୟନେ ଅଞ୍ଜନ
ମୁଖ ଯଦି ହେବ କାଳିମାମୟ,
ପୋଛି ଚନ୍ଦ୍ର କାଳି ନ ଦେଇ ଅଞ୍ଜନ
ହେବ ମନୋହର କାନ୍ତ ଉଦୟ ।

ଯାଇଥିଲେ ଦଅ ବଳିତ ପ୍ରସୂନ
ଥାଏ ଯଦି ତହିଁ କଛୁ ସୌରଭ,
ସୌରଭ ନ ଥିଲେ କାନ୍ତିରେ ନଳିନ
ନ ଥିଲେ, ବଢ଼ିବ ସିନା ଗୌରବ ।

ମସ୍ତକେ ମୋ ଟୋପି ନ ଦେବ ବାବା ରେ
ନ କାଢ଼ିବ ମୋର କରୁ କଙ୍କଣ,
ସିନ୍ଦୂରବିନ୍ଦୁ ମୋ ଭାଲେ ରଖିବାରେ
ନରେନ୍ଦ୍ରର ମନେ ଥିବ ସ୍ମରଣ ।

ଭାଇ ଭାଇ ମଧ୍ୟେ କଳହ ନ କର
ତୁମ୍ଭ କଳହେ ମୁଁ ହେବ ଦୂଷିତ,
ରତନ ସଂଭ୍ରମେ ହୁଅ ଯତ୍ନପର
ରତ୍ନ ଗୁଚ୍ଛି ମୋତେ କର ଭୂଷିତ ।

ଅଭିମାନ ବେଗେ ନ କର ପ୍ରଳାପ
ପ୍ରଳାପ ଶୁଣିଲେ କାନ୍ଦେ ମୋ ହୃଦ,
ଜ୍ଞାନେ ଧ୍ୟାନ ରଖ କର ସଦାଳାପ
ସଦାଳାପେ ସଦା ବଢ଼ୁ ମୋ ମୁଦ ।

ମନ୍ଦିରକୁ ମୋର କର ସୁସଜ୍ଜିତ
ରମ୍ୟ ରମ୍ୟ ଉପକରଣ ଆଣି,
କାଠ ଖମ୍ବମାନ କର ସୁସଜ୍ଜିତ
ଢାଳଦିଅ ତହିଁ ସୁବର୍ଣ୍ଣପାଣି ।

ନାନା ଦେଶୁଁ ଆଣି ତରୁବଲ୍ଲୀମାନ
ରୋପଣ କର ମୋ ଉଦ୍ୟାନ ଗର୍ଭେ,
ଉଦ୍ୟାନ କରିବ ସୁଫଳ ପ୍ରଦାନ
ଭୁଞ୍ଜିବ ସୁଖେ ମୋ ନନ୍ଦନ ସର୍ବେ ।

ଆବର୍ଜ୍ଜନାହୀନ କର ମୋ ସଦନ
କର ଆବଶ୍ୟକ ଜୀର୍ଣ୍ଣ ସଂସ୍କାର,
ମାନ୍ୟ ଧର୍ମ ରଖି କର ଆଚରଣ
ନ କର ମୋ ପୁରେ ଯଥେଚ୍ଛାଚାର ।

ନିଜ ଉନ୍ନତିକି ଉନ୍ନତି ନ ମଣ
ମୋତେ ନ କରିବାପାଏ ଉନ୍ନତ,
ଏକ ତରୁତଳେ ଥିବେ କେତେ ଜଣ
ବନ୍ଧୁ ଜନ, ଫଳ ଦିଏ ସତତ ।

ଭୂମ୍ଭ ରାଜ୍ୟ ଭୂମି ପ୍ଲାବି ନପାରନ୍ତୁ
ଆଣ୍ଡିସ୍ ଗିରିର ଅସଂଖ୍ୟ ଝର,
କେ ହରିବ ଭୂମ୍ଭ ହୃଦୟୁ ତପତ
ନ ବହିଲେ ପୂତ ସ୍ରୋତ ମୋହର ।

ହୋଇ ଏକପ୍ରାଣ ହୋଇ ଏକମନ
ଉଚ୍ଚତାନେ ଗାଅ "ଭାରତୀ ଜୟ"
ଉଡ଼େ ଯେବେ କୀର୍ତ୍ତି- ପତାକା ଗଗନେ
ହୋଇଯାଉ ଶୁଭ୍ର ପତାକାମୟ । *

* ଏହି କବିତାଟି ଲପିସସ୍ଥା ଆନ୍ଦୋଳନ କାଳରେ ଲିଖିତ ।

# ନବଯୁଗ

ଉତ୍କଳକଣ୍ଠ ମଧୁସୂଦନ ଙ୍କେ

ଶୁଣ ନରେ ନବ ସମ୍ବାଦ
ପାତରେ ତୋର ଶ୍ରବଣ,
ନବଯୁଗ ଶୁଭ୍ର ବିଧାନେ
ଆସୁଅଛି ବନ୍ଧନ ।

ମଙ୍ଗଳ ବାଜଣା ବାଜୁଛି
ଶୁଣ ଭାରତ ଦ୍ୱାରେ,
ଚୌଦିଗେ ଉଡୁଛି ବିଜୟ-
ବାନା ଅନାଅ ବାରେ ।

ଛୁଟିଲା ଦୁଃଖ-ନିଶା
ଦେଖ ଉଷା ଆକାଶେ,
ସ୍ୱରଗର ପ୍ରେମ-ଆଲୋକ
ଚଉଦିଗେ ପ୍ରକାଶେ ।

ହିରଣ୍ମୟ ପ୍ରେମ-କିରଣ
ଦେଖ ଭାରତ-ଶିରେ,
ଛିନ୍ନ ବିଚ୍ଛିନ୍ନ ଭାରତ
ଏକ ହେଉଛି ଧୀରେ ।

ବର୍ଣ୍ଣଭେଦ, ଧର୍ମଭେଦର
ଦିନ ହେଉଛି ଶେଷ,
ମହାଯୋଗେ ହେବ ଭାରତ
ମହାଭାରତ ଦେଶ ।

ପଞ୍ଜାବ, ଅଯୋଧ୍ୟା, ବଙ୍ଗଳା,
ରାଜବାଡ଼, ଗୁର୍ଜ୍ଜର
ତେଲଙ୍ଗ, କର୍ଣ୍ଣାଟ, ଉତ୍କଳ,
ମହାରାଷ୍ଟ୍ର ସଙ୍ଗର ।

ଗାଉଛନ୍ତି ମହାସଙ୍ଗୀତ
ଜୟ ଭାରତ ଜୟ,
ଏକଜାତି ଆମ୍ଭେ ସଭିଏ,
ତେବେ ଆଉ କି ଭୟ ?

[ ୨ ]

ପୁଣି ଶୁଣ ନବ ସମ୍ବାଦ
ସର୍ବେ ଉଲ୍ଲାସେ ମାତି,
ଏକମାତ୍ର ବସୁନ୍ଧରା
ଏକ ମାନବ-ଜାତି ।
ଅସିଆ, ଆଫ୍ରିକା, ୟୁରୋପା,
ଆମେରିକା ସଙ୍ଗତେ
ସମ୍ମିଳିତ ହେଉଅଛନ୍ତି
ପ୍ରେମ-ସାଧନ ମତେ ।

ପୂର୍ବ, ପଶ୍ଚିମ, ଉତ୍ତର
ପୁଣି ଦକ୍ଷିଣ ଆଶା
ଗାଉଛନ୍ତି ପ୍ରେମ-ସଙ୍ଗୀତ
ନବା ଅମୃତ-ଭାଷା ।

ପୃଥିବୀ ଡାକଇ ସର୍ବଙ୍କେ
ଶୁଣ ଜଗତବାସୀ,
ମୋ ଜନମୀ ତୁମ୍ଭ ଜନମୀ
ହୁଅ ପ୍ରେମେ ବିଶ୍ୱାସୀ ।

ସ୍ୱରଗର ପ୍ରେମ-ବାଦନ
ହୃଦ-ଉଲ୍ଲାସକାରୀ
ବାଜଇ ମଧୁରେ ଚୌଦିଗେ
ଶୁଣ ହେ ନରନାରୀ ।

ପ୍ରେମର ବିଜୟ-ପତାକା
ଉଡ଼ୁଅଛି ଅମ୍ବରେ;
ଜୟ ପ୍ରେମ ଜୟ ଗାଅ ରେ
ଗାଅ ମଧୁର ସ୍ୱରେ ।

କୋଟି କୋଟି କଣ୍ଠ ମିଳାଇ
ଗାଅ ଆନନ୍ଦେ ମାତି
ଏକମାତ୍ର ବିଶ୍ୱ-ବିଧାତା
ଏକ ମାନବ-ଜାତି ।

# ବିରହିଣୀ ଲତା

ନନ୍ଦକିଶୋର ବଳ

"O that't were possible
After long grief and pain
To find the arms of my true love
Round me once again !"

Maud Tennyson.

ଦୁଇ ଭ୍ରମର ମିଳି ପ୍ରବାସ କରିଗଲେ
ଭ୍ରମିଲେ ସୁଦୂର ବିଦେଶେ,
ଏମନ୍ତେ ବହୁକାଳ ବହିଣ ଗଲା ଚଳି
ବାହୁଡ଼ି ନଇଲେ ସ୍ୱଦେଶେ ।
ଏକର ବାଲ୍ୟସଖୀ କ୍ଷୀର-ନୀର-ବାନ୍ଧବୀ
ଲତାଏ ଥିଲା; ଦିନ ଯାଉଁ
କୋମଳ ଅଙ୍ଗରେ ସେ କଢ଼ି ଟି ହୋଇଥିଲା
ଫୁଟି ସେ ଦିଶେ ଢାଉଢାଉ ।
ପ୍ରଭାତ ସମୀରଣେ ଦୋହଲୁଥାଏ ଲତା
ଶାଖାରେ ବସି ପକ୍ଷୀ ଗାଏ,
ନିଶିପାତ ନିହାର- ଛଳେ ସେ ଗୃହୁ ଲତା
ନୟନୁଁ ଧାର ଝରୁଥାଏ ।

ବେଳ ଯାଆନ୍ତେ ବୁଡ଼ି ମାଡ଼ିଆସେ ଅନ୍ଧାର
ଫେରନ୍ତି ଗୋଠୋଷ୍ଠେ ଗୋଧନ,
ପଥେ ପଥିକମାନେ ପୁଷ୍ପିତା ଲତା-ଅଙ୍ଗେ
ଫେରନ୍ତି ସନ୍ତୁଷ୍ଟ ନୟନ ।

କୃଷକ ହଳ ଖୋଲି ଛାଡ଼ିଆ ଗ୍ରାମ ଦାଣ୍ଡ
ପଡ଼ାରୁ ଗୋପାଳ ଫେରଇ,
ବନ ଅନ୍ତରାଳରୁ ଚକ୍ରବାକ ମିଥୁନ
ଡାକ ଦିଅନ୍ତି ରହି ରହି ।

ମେଲାଣି-ଗୀତ ଗାଇ ବସା-ଗଛ ଆଡ଼କୁ
ଆକାଶେ ଉଡ଼ଯାଏ ପକ୍ଷୀ,
କଣ୍ଠେ ବାହୁ ଛନ୍ଦଣ ଲତା ବିତାନ ତଳେ
ବୁଲନ୍ତି ଆସି ସଖା-ସଖୀ ।

ଆଲୋକ ଅନ୍ଧକାର- ରମ୍ୟ ମଧୁମିଳନ
ଦେଖନ୍ତି ଏକାକିନୀ ଲତା,
ମଧୁପୂର୍ଣ୍ଣ କୁସୁମ ପଡ଼ିଛି ଲତାର ଅଙ୍ଗ
ବକ୍ଷେ ହୁଏ ସେ ଆନତା ।

ଏମନ୍ତେ ବହୁକାଳେ ଏକଇ ଷଟ୍‌ପଦ
ବାହୁଡ଼ି ଅଇଲା ସ୍ୱଦେଶେ,
ସ୍ୱବନ୍ଧୁ ଅଦର୍ଶନେ ଛଳପଡ଼ିଲା ଲତା
ଦାରୁଣ ବିଷାଦ ଆବେଗେ ।

# ଶୈଶବର ପଲ୍ଲୀସ୍ମୃତି

ନନ୍ଦକିଶୋର ବଳ

× × ×

ମୋ ବାଲ୍ୟ-ଜୀବନ ଥିଲା ମଧୁମୟ
ନିସର୍ଗ ସୁନ୍ଦର ସ୍ଥାନ,
ଦେଇଥିଲେ ମୋତେ ଦୟାମୟ ପ୍ରଭୁ
ଆଜନ୍ମ ଅମୂଲ୍ୟ ଦାନ ।

ଶୈଶବ-ଜୀବନ କ୍ଷୁଦ୍ର ପଲ୍ଲୀଗ୍ରାମେ
କାଟିଲି ମହା ଆନନ୍ଦେ
ଗିରି, ବନ, ନଦୀ, ପଲ୍ଲବ, ପ୍ରସୂନ,
ଶ୍ୟାମଳ ନିକୁଞ୍ଜ ମଧ୍ୟେ ।

ନିକାଞ୍ଚନେ କେତେ ଦେଖୁଥିଲି ବସି
ଘନ ବନ ଗିରିଶ୍ରେଣୀ,
ବିସ୍ତୀର୍ଣ୍ଣ ପ୍ରାନ୍ତରେ ଗିରି ପଦପ୍ରାନ୍ତେ
ଗିରିନଦୀ ନୀର-ବେଣୀ ।

ପାଖେ ଥିଲା ତୋଟା ଦଣ୍ଡା, ଶାଲ, ଜୋର,
ଚୂତକୁଞ୍ଜ, ବଂଶବନ,
ନିରନ୍ତର ଶୁଣୁଥିଲି ନାନା ଜାତି
ବନ-ବିହଙ୍ଗମ-ଧ୍ୱନ ।

ସାନ ସାନ ଗ୍ରାମ ଶିଶୁଙ୍କ ସଙ୍ଗତେ
କରୁଥିଲି ଧୂଳିଘର,
ମନେପଡ଼େ ମୁଗ୍ଧ ଆନତ ନୟନ
ଜନପଦ ବଧୂଙ୍କର ।

ମଧୁର କବିତାପୂର୍ଣ୍ଣ ଥିଲା ଆହା
ସେ କ୍ଷୁଦ୍ର ପଲ୍ଲୀ-ଜୀବନ,
ଅଛି ପଲ୍ଲୀ ଆହା ନାହିଁ ମୋହ ପକ୍ଷେ
ତା' ରୂପ ମନମୋହନ ।

ଶୈଶବ ଗଗନ ଶୈଶବ ଭୁବନ
ଥିଲା ମୋହମୟ ଦେଶ,
ସେହି ପ୍ରିୟ-ପଲ୍ଲୀ, ନ ଦେଖାଏ ଆଜ
ମୋତେ ତ ମୋହନ ବେଶ ।

ପଲ୍ଲୀ-ସୀମନ୍ତିନୀ ଦୂରୁଁ ଦେଖି ମୋତେ
ଗୃହରେ ଲୁଚନ୍ତି ଯାଇ
ପଲ୍ଲୀ-ଶିଶୁଗଣ ନିକଟେ ଦେଖିଲେ
ଭୟରେ ଖେଳନ୍ତି ନାହିଁ ।

ପଲ୍ଲୀ-ଲଲାଟରେ ଗୋଧୂଳି ତାରକା
ପାଉଥାଏ କେଡ଼େ ଶୋଭା,
କଳ୍ପନାପଟରେ ସେ ଅଙ୍କିତ ଛବି
ତର ପ୍ରାଣ-ମନୋଲୋଭା ।

ନାନା ଜାତି ପକ୍ଷୀ ଉଡ଼ିଯାଉଥାନ୍ତି
ପଙ୍‌କ୍ତି ବାନ୍ଧି ସେ ଗଗନେ,
ଯାଇଅଛି ଉଡ଼ି ମୋ ବାଲ୍ୟ-ବିହଙ୍ଗ
ତା ଗୀତ ବାଜେ ଶ୍ରବଣେ ।

ଇଚ୍ଛା ହୁଏ ଥରେ ଦଉଡ଼ି ଯାଇଣ
ଦେଖି ମୁଁ ଆସିବି ତାହା,
ଦୀର୍ଘ କାଳସ୍ରୋତ ମଧ୍ୟେ ବ୍ୟବଧାନ
କେସନେ ଟପିବି ଆହା ?

ଉଜାଣି ସନ୍ତରି ଯୁଗ କାଳ-ସ୍ରୋତ
ନ ଯାଇ ପାରିବି ଆଉ,
ମଧୁର ଶୈଶବ- ଜୀବନ-ସ୍ୱପନେ
ମୋର ଏ ଜୀବନ ଯାଉ ।

# ଅଭିଶପ୍ତର ଅଭିମାନ

କୁନ୍ତଳାକୁମାରୀ ସାବତ

ଜାଣେ ଏ ଜୀବନ କେବେହେଁ ନ ହେବ ସଫଳ,
ଅକାରଣ ନୁହେଁ ମୋର ଉଷ୍ଣ ଅଶ୍ରୁଜଳ
ନିବିଡ଼ ନିଷ୍ଠୁର ଘନ ଗହନ ଅନ୍ଧାରେ
ନ ମରିବ ଚିରଦିନ ତୀବ୍ର ହାହାକାରେ ।

ଅମିୟ ଅରୁଣ ଭାତି
ବିନାଶିବ ଚିର ରାତି,
ଅମୃତ ଆନନ୍ଦେ ମୁହିଁ ଅନନ୍ତ ଜୀବନେ
ଜାଗିବି ଜାଗିବି, ଦୀପ୍ତ ଆଶା ମୋର ମନେ ।

ଦୁର୍ବଳ କୋମଳ ମୁହିଁ ମଳିନ ଅଧମ
କୋଟି କର୍ତ୍ତବ୍ୟ ପାଳନେ ସତତ ଅକ୍ଷମ
ଶତ ଶତ ଭୁଲ ଭ୍ରାନ୍ତି,
ଦାରୁଣ ଦୂଷଣ ଶ୍ରାନ୍ତି,

ହେଉଛି ଜୀବନ ମୋର ସହସ୍ର ଜଞ୍ଜାଳ,
ତଥାପି ନୁହେଁ ମୁଁ ସଖା ମୃତ୍ତିକା କଙ୍କାଳ ।
ଅମୃତ ସନ୍ତାନ ମୁହିଁ ସୁଧା-ଅଧିକାରୀ,
ଅନନ୍ତ ତିମିର ତଳେ ଦୀପ୍ତ ଦୀପଧାରୀ ।

ଲାଞ୍ଛନା ଗଞ୍ଜନା ଶତ ଭର୍ତ୍ସନା ଜୀବନେ,
ପଦେ ପଦେ ଅପମାନ ମୀଡ଼ଇ ମରମେ,
ତୀକ୍ଷ୍ଣ ଶେଳ ଶିଳା ଅବା କଠିନ କୁଳଶ-
ପ୍ରହାରେ ଜର୍ଜର ହୃଆ, ଜୀବନ ମୋ ବଶ,
ତଥାପି ଅମର ମୁହିଁ ମାନବସନ୍ତାନ,
ବ୍ୟର୍ଥେ ଏ ପୃଥିବୀ ମୋତେ ନ କଲା ଆହ୍ୱାନ ।
ତିଳେ ତିଳେ ଏ ଜୀବନ
କରିବନି ନିବେଦନ,
ସାର୍ ସୃଷ୍ଟି ସାର ମୁହିଁ ଭ୍ରଷ୍ଟ ଦେବତା,
କରମକରଚା ମୁହିଁ ମୋ ଭାଗ୍ୟନିୟନ୍ତା ।

କିଛି କି ପରିହାସ ଦେଖି ଦୀନବେଶ,
ଅର୍ଦ୍ଧ-ଅନଶନେ କ୍ଷୁଦ୍ର କୁଟୀରେ ମୋ କ୍ଳେଶ ?
ତପତ ତପନତଳେ ତିକ୍ତ ସ୍ୱେଦଜଳେ
ରୁକ୍ଷ ବକ୍ଷଧାରି ମୁହିଁ ଚଷଇ ଲଙ୍ଗଳେ;
ଅବା ଭିକ୍ଷାପାତ୍ର ଧରି
ସରମେ ମରମେ ମରି
ତବ ରମ୍ୟ ହର୍ମ୍ୟ ତୋର୍ ତୋରଣ ସମ୍ମୁଖେ
କ୍ଳାନ୍ତ ପଦକ୍ଷେପେ ଆସେ, ନ ଗୃହ୍ଣି ମୁଖେ ।

ଲଜେ ପୋଡ଼ ମଥା ଦୂରେ ଯାଅ ମୋର ଭାଇ,
ନ ଚାହିଁ ନ ଚାହିଁ ମୋତେ ନ ହେବ ବଥାଇ ।
ତିଳେ ତିଳେ ପ୍ରାଣ ମୋର କରିବ ଅର୍ପଣ
ତବ ଶତ ସୁଖ ସହିଁ ହେବନି ବର୍ଦ୍ଧନ ।

ବଞ୍ଚିବାର ଅଧିକାର ରଖ ଶତଦଳ,
ମରଣେ ସମ୍ପଦ କର ହେଉଥାଏ କ୍ଷୀଣ ।
ତଥାପି ମହତ୍ତ୍ୱ ନାହିଁ
ମନେକରଖ ଏହା ଭାଇ,
ଅକାରଣେ ଜନ୍ମ ମୋର ନ ହେଲା ଭୂତଳେ;
ଅନନ୍ତ ବିନାଶ ଘେନ ମରିବ ବିରଳେ ।
ଅନନ୍ତ ବିକାଶ ମମ
ଶତଦଳ ଅନୁପମ
କର୍ଷଣ-କର୍ଦ୍ଦମେ ପଦ୍ମ ମୂର୍ଚ୍ଛି ଶତଦଳ,
ନ ହେବ ବିଫଳ ମୋର ତପ୍ତ ନେତ୍ରଜଳ ।
ପାଷାଣେ ପିଣ୍ଡିତ ଭାଗ୍ୟ ବିଗ୍ରହରୁ ସଖା,
ପାଷାଣ ପ୍ରାଣରେ ତେଣୁ ନ ପଡ଼ଇ ଦେଖା ।
ଉଚ୍ଚାସନେ ସ୍ୱଚ୍ଛମନେ ଆଜ୍ଞମ ନୟନେ
ହସୁଛ ଦିବସ ନିଶା, କାନ୍ଦେ ମୁଁ ଅୟନେ ।
ମୋ ରକ୍ତ ତପନ୍ତ ଧାରେ,
ମୋର ହୃଦ ହାହାକାରେ
ବୃଦ୍ଧି ରହିଅଛୁ ତବ ଜୀବନ ସମ୍ପଦ;
ନ ମିଳେ ମୁକତି ମୋତେ ଧାଇଁଣ ଶ୍ରୀପଦ ।
ତୁମେ ବୀର, ତୁମେ ଗୁଣୀ,
ମୁଁ ହୀନ ଅଜ୍ଞାନ ଋଣୀ ।
ତୁମର ସଭ୍ୟତା ପାଶେ ତୁମର ଆଲୋକେ,
ତୁମ ବିନା ବାସ ମୋର ଅନନ୍ତ ନରକେ ।

ନ ଘାବ ନ ଘାବ ଘାଇ,
କେହି କେବେ ଶୁଣିନାହିଁ,
ନିଷ୍ଠୁର ପୀଡ଼ନ ଦାଉ ଦେ'ଣା ଗୋଟି ଗୋଟି ।
ଥାଉ ସୁଖେ, ଭୋଗେ ମୁହିଁ କଷ୍ଟ କୋଟି କୋଟି !

× × ×

ଅକାରଣେ କ୍ରୌଞ୍ଚପକ୍ଷୀ ନ ତେଜନ୍ତା ଜୀବ,
ରାମାୟଣ ପଣା ପରି ପୃଥିବୀ ପିଇବ,
ଜଗକୁଳଗୁରୁ ହେବେ ତସ୍କର ରତ୍ନାକର;
ବୋଲାଇବେ ବାଲମିକୀ ମହର୍ଷିପ୍ରବର;
ଅକାରଣେ ବନବାସେ ନ ଯିବ ଜାନକୀ,
ସତୀତ୍ୱ ଗୌରବ ପରା ଉଠିବ ମସ୍ତକ ।
ପାଇ ପୁତ୍ର ଅଧିକାର
ରଘୁନାଥ ନେତ୍ରଧାର
ପୋଛି ଲବ କୁଶ ଯୁଗ ଧନ୍ୟ ହେବେ ଭବେ ।
ଅକାରଣେ କ୍ରୌଞ୍ଚୀ ଶୋକ ନ କଲ୍ପ ବୈଧବ୍ୟ ।

× × ×

ହାତ ଖାଣ୍ଡ ଖାମ ଭୁଜେ ଦନ୍ତୁର ଦରପେ,
ଅସହାୟ, ହୀନ, ଭୟେ ପରାଣ ଅରପେ;
ଚିରନ୍ତନ ସମତୁଲ ନ ଥିବ ତୁମର,
କେବେ ତୁମେ ତଳେ, କେବେ ହେବ ମୁଁ ଉପର;
ତୁମର କଣ୍ଠ ମୋର ହେବ ଶିର ଶୋଭା,
ମୋହର ମୋହିନୀ ଢଳେ ହେବ ମନୋଲୋଭା ।

ଆଜ ଯା'ରେ ପଦାଘାତ
କାଲ ତା'ର ଧରି ହାତ
ଆଦରେ ଅଞ୍ଚଳନିଧି ଅଙ୍କ ଆସନରେ
ରଖିବ ରତନ ସମ ସ୍ନେହ ଯତନରେ ।

ବଳି ! ପଦଦଳା ତବ ସହିବ ନୀରବେ,
ଗୋଟିଏ କଥା ମୋ ମୁଖେ ନ ଶୁଣିବ ଭବେ;
ତଥାପି ନିଃଶ୍ୱାସ ମୋର ଫଟାଇ ପାଷାଣ
କରିବ ବିଦୀର୍ଣ୍ଣ ତବ ଅହଙ୍କାରୀ ପ୍ରାଣ ।

ଆଜ ଯା'କୁ ତୃଣସମ କର ତୁଚ୍ଛ ହେୟ,
ଆଜ ଯେ ତୁମର ବନ୍ଦୀ କଠିନ ଶୃଙ୍ଖଳେ,
କାଲି ପୂଜାଫୁଲ ଦେବ ତା'ର ପାଦତଳେ ।
ଆଜ ତୁମେ ଯା'ର ରିପୁ
କାଲି ତବ ଭ୍ରେମବାନ୍ଧୁ
କରି ଆଲିଙ୍ଗନ ତାକୁ ଦେବ ଦେବାସନ
ତା' ଗୁଣେ ମୋହିବ ତବ ମୂଢ଼ ଅନ୍ଧମନ ।

ଅସ୍ପୃଶ୍ୟ ଇତର ମୁହିଁ ଘୃଣିତ ଚଣ୍ଡାଳ,
କରେ ପରିଷ୍କାର ତବ ନରକ ଜଂଜାଳ ;
କାନ୍ଦି ବହନଏ ବୋଲି ପ୍ରଖର ଖରରେ
'ବେହେରା', 'ବେହେରା' ଡାକ ଶୁଣାଅ ଶ୍ରଦ୍ଧାରେ ।
ମୁଁହିଁ ପଦ ସେବାକାରୀ
ଭୃତ୍ୟ, ପୂଝାରୀ, ଭଣ୍ଡାରି
ବୋଲାଉଛ ବାବୁ ବସି ଉଚ୍ଚ ଆସନରେ
ଲାଜ ଲୁଚୁଅ କାନୁ ମୋ ଦତ୍ତ ବସନରେ;

ମୋ ଦଣ୍ଡ ଅଣନ ପୁଣି ନସ୍ୟତ ଭୋଜନ
ତୁଙ୍ଗ ପ୍ରାସାଦରେ ତୁମେ, ତଳେ ମୋ ବେଦନ ।

× × ×

ହେଳ ମୋ ମୂର୍ଚ୍ଛିତା ସୁଖେ ଦିଅ କରତାଳି,
ମରେ ମୁଁ ଦରିଦ୍ର ଖୋଲେ ଚକ୍ଷେ ଚଢା ଜାଳି;
ନାହିଁ ମୋର ବାସ, ଅଛି ମହାକାଶତଳେ,
ନାହିଁ ମୋର ହେମଶଯ୍ୟା ଶୁଏ ମୁଁ ଭୂତଳେ,
ଶୀତ ଖର ବରଷାରେ
ପ୍ରକୃତିର ଅତ୍ୟାଚାରେ
କ୍ଷୀଣ ଅଙ୍ଗଯଷ୍ଟି ସର ଆୟୁ ଯାଏ ହରି,
ତଥାପି ବଞ୍ଚିବ ନଷ୍ଟେ ଏ କଷଣେ ମରି ।
ମରଣ ନୁହେଁ ମୋ କ୍ଲେଶ
ନୁହେଁ ତା ବିନାଶ, ଶେଷ,
ଅଦ୍ଭୁତ ସୁନ୍ଦର ନବଜୀବନ ଆରମ୍ଭ
ମୋ ମରଣେ କିନ୍ତୁ ତବ ଜୀବ କି ସମ୍ଭବ ?
ସମ୍ବଳହୀନର ଶେଷ ଆଶାର ସମ୍ବଳ
କାଢ଼ିନେଲ ଶୀତେ ଯଥା ଶୀତାର୍ତ୍ତ କମ୍ବଳ;
ଭାବିଲ ମହତ ଏକ କରମ ସାଧିଲ
ବୈରୀଭାବେ ହିନ ଅରି ଜୀବନ ବଧିଲ ।
କିନ୍ତୁ 'ରକ୍ତବୀଜ' କେବେ ମରି ସେ ନମରେ ।
ଶତ ଶତ ଦୈତ୍ୟ ଜାତ ବିନ୍ଦୁଏ ରକ୍ତରେ ।

ଖଡ୍‌ଗ ହସ୍ତେ ହାଣି ଶିର
ବୁହାଇଲ ଯେ ରୁଧିର,
ବନ୍ଧୁ ହିନ୍ଦୁ ହୋଇ ଶେଷେ ବୁଡ଼ିବ ଆପଣ
ଲଭିବ ତ ତୁଚ୍ଛଫଳ କୁହାରେ କୁହାଣ ।

× × ×



# ଜନନୀ ତୋହର ମୋହନ ମୂରତି

କୁନ୍ତଳାକୁମାରୀ ସାବତ

ଜନମି ତୋହର ମୋହନ ମୂରତି
ମୋ ପରାଣ ପ୍ରୀତି ଚନ୍ଦନ
ଜନମି ତୋହର ଘନ ଗିରିବନ
ମୋ ପାରିଜାତକ ନନ୍ଦନ ।

ମଞ୍ଜୁଳ ମନ୍ଦାର ତୋର ବନଫୁଲ
ତୋ ଶ୍ୟାମ ସରସେ ସୁଧାନନ୍ଦ ଠୁଳ
ତୋର ମହାନଦୀ ଭବ ବିସ୍ମୃତିପ୍ରଦା
ତୋ ସିନ୍ଧୁ ଇନ୍ଦିରା ସଦନ ।

ତୋ ମନ୍ଦିରମାଳା ମୋ ନେତ୍ରସଙ୍ଗାଳ
ପୁଣ୍ୟ ତୋର ପୁରୀ ଚନ୍ଦ୍ରତୀର୍ଥ ବାଲି
ଦୁର୍ଗ ବାଟିବାଟୀ ବୀରପୁଷ୍ଟ ମାଟି
କପାଳ-ତିଳକ-ରତନ ।

ବେଦନାରେ ତୋର ପ୍ରାଣ ମୋ କାତର
ଝରେ କି ଗୋ ମାତଃ ତୋ' ଅଶ୍ରୁ ନିର୍ଝର
ପଦେ ପ୍ରାଣ ବାନ୍ଧି ତୋ' ସଙ୍ଗେ କାନ୍ଦିବି
ସାରିବି ସଂସାର-ଜୀବନ ।



# ନୀରବ

ଗୋପବନ୍ଧୁ ଦାସ

( ୧ )

ନୀରବେ ପ୍ରସରେ କ୍ଷଣେ ଦିବ୍ୟ-ଜ୍ୟୋତିଧାର
ନୀରବେ ଆକାଶେ ଉଦେ ରବି-ଶଶୀ-ତାରା,
ନୀରବେ ବଢ଼ଇ ତରୁଲତା ମହୀଧର
ନୀରବେ ନିଖିଳ ବିଶ୍ୱ ନିୟନ୍ତ୍ରେ ମନ୍ତର ।

( ୨ )

ସଦା-କାଳ-ପାରାବାର-ଅନନ୍ତ ଗରଭେ
ମିଶଇ ସମସ୍ତ-ସ୍ରୋତ ସତତ ନୀରବେ,
ନୀରବେ ଜଗତ କରେ ନିଜ କକ୍ଷେ ଗତି
ନୀରବ ନିଖିଳ ବିଶ୍ୱ ନିୟନ୍ତ୍ରେ କେତି ।

( ୩ )

ନୀରବେ ପ୍ରେମିକ ନେତ୍ରେ ଅଶ୍ରୁ ଢଳଢଳ,
ନୀରବେ ସରସୀ ବକ୍ଷେ ହସେ ଶତଦଳ ।
ନୀରବେ ନିରାଶ ହୃଦେ ବହେ ଦୀର୍ଘଶ୍ୱାସ,
ସୁଖେ ଦୁଃଖେ ପରାଣରେ ନୀରବ ଆଶ୍ୱାସ ।

( ୪ )

ତେବେ କିପାଁ ଚଉଦିଗେ ଚହଳ ଚିତ୍କାର
କିପାଇଁ ମାନବ କରେ ଏତେ ଅପଚାର ?
ଚାହିଁ ଅନ୍ତସ୍ଥ, ଚାହିଁ ଆପଣା ଅନ୍ତର,
ଶୁଣ ଶିଖ ସାଧ ସଦା ନୀରବ ମନ୍ତର ।



# ବନ୍ଦୀର ଆତ୍ମକଥା

ଗୋପବନ୍ଧୁ ଦାସ

"ଦେଶବାସୀ ବନ୍ଧୁ ଆତ୍ମୀୟ ସୋଦର,
କାରାଦଣ୍ଡେ ମୋର ହେଲ କି କାତର ?
ଥିଲା ଏହା ଆଗୁଁ ଜଣାଶୁଣା କଥା
ସେଥିପାଇଁ କେବେ କପାଁ ମନେ ବ୍ୟଥା ?
କାତରତା ସିନା କାପୁରୁଷପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ,
ନ ମରେ ସେ କେବେ ପରାଣ ଆତଙ୍କେ ।
ଜାଣିଛୁ, ଲଗିଛୁ ଏ ଶାନ୍ତ-ସମର,
ନାହିଁ ଏଥି ତୋପ ହାତହତିଆର ।
ବଳ ବା ବିଭବ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।
ଆଧ୍ୟାତ୍ମିକ ବଳେ ଲଗିଛୁ ଲଢ଼ାଇ,
ଭାଙ୍ଗିବାକୁ ପଶୁବଳର ବଡ଼ାଇ ।
ଛାଡ଼ି ଧନ-ଆଶା ଘରଦ୍ୱାର ମାୟା
ଅସଙ୍ଗ ଅସ୍ତ୍ରେ ସେ ସାଜିଅଛୁ କାୟା,
ଅହିଂସା ବଳରେ ଯେହୁ ବଳୀୟାନ
ଏ ରଣପ୍ରାଙ୍ଗଣେ ଏକା ତା'ର ସ୍ଥାନ ।

ଏଥିରେ ପ୍ରଥମ ଫଳ କାରାଦଣ୍ଡ,
ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ ।

ବୁଝ ଏହା ମୁହିଁ ପଶିଛୁ ସଂଗ୍ରାମେ,
ନାହିଁ ମୋ 'ଖର୍ବର ମାନ-ଅପମାନେ ।
ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।

ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼,
ପୂରୁ ତହିଁ ପଡ଼ ମୋର ମାଂସହାଡ଼ ।
ସ୍ୱାଧୀନତା ପଥେ ଖଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।

ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।"

× × ×

ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର
ଏହା ବିନେ ଦେଶ ହୁଏ ଛାରଖାର ।

ଅଙ୍ଗେ ନିଭାଉଛ କେତେ କି ଅବସ୍ଥା
ଅନ୍ନ ବସ୍ତ୍ର ଆଉ ହେବ କି ହେ ଶସ୍ତା ?

ବନ୍ଦୋବସ୍ତ ପରେ ଆସେ ବନ୍ଦୋବସ୍ତ
ପ୍ରଜାକୁଳ କ୍ରମେ ଭଜିଲେଣି ଅସ୍ତ ।

କେତେ ନାମେ କେତେ ପ୍ରକାରରେ କର,
ଦେଇ ପ୍ରଜାଙ୍କର ଭାଙ୍ଗିଲଣି ଘର ।

ଖାଇବା ବାସନ ହେଉଛୁ ନଳମ
ତେବେ ହେଲେ ନାହିଁ କରଇ ଢିରାମ ।

ସହି ନାନା ଦୁଃଖ ଯାତନା ସନ୍ତତ;
ନାହିଁ ଆଉ ତୁମ୍ଭ ଶରୀରେ ରକତ ।

ଜାଣେ ମୁଁ କରୁଛ ନାନାଆଡ଼ୁଁ ଭ୍ରାନ୍ତି
ଉଭାଇ ଶାସିବା ସ୍ଥାନ ରାଜମାତ୍ତି ।

× × ×

ରହିବ ନାହିଁ ଏ ମାନ୍ତି କାଳେ କାଳେ
ନାଶେଯିବ ସତ୍ୟ-ନ୍ୟାୟ୍ୟ-କରବାଳେ ।

× × ×

ସ୍ୱରାଜ୍ୟେ ଏ ମାନ୍ତି ହୋଇବ ପ୍ରଶ୍ମନ
ନ ରହିବ ଆଉ ଦୁଃଖ ଦୁରାଶୟ ।

ନ ସହିବ କଷ୍ଟ କେହି ଅନାହାରେ,
ନ ମରିବ ଦୁଃଖୀ ଧନୀଙ୍କ ପ୍ରହାରେ ।

ଉଭାଇ ଶାସିବା ମାନ୍ତି ଭାଙ୍ଗିଯିବ.
ପ୍ରଜାଙ୍କ ମତରେ ଶାସନ ଚାଲିବ ।



# କନକା ନୃପକୁମାରୀ

ପଣ୍ଡିତ ଗୋଦାବରୀଶ ମିଶ୍ର

ଖଲିକୋଟେ ଭିତ୍ରି ଯିବେ ନୃପବର,
କହନ୍ତି, "ନାଉରି, ଶୁଣ ବଚନ;
ଆର କୂଳେ ବେଗେ ପାରକରିଦେଲେ,
ଏ ମୋହର ଗୋଟି ପାଇବୁ ଜାଣ ।"
"କିଏ ତୁମେ ଆଜ ଏ ପାଣି-ପବନେ
କାଳିଜାଈ ଚଣ୍ଡ ହେବ ହେ ପାର ?"
"ଖଲିକୋଟ ରାଜନନ୍ଦନ ମୁଁ ପରା
ଏ ବାଳା କନକା ନୃପକୁମାରୀ ।
ତିନଦିନ ଧାଇଁ ଆସିଅଛୁ ବେନି,
କନକା ସଇନେ ଛନ୍ତି ଗୋଡ଼ାଇ;
ବାଟେ ପଡ଼ିଗଲେ ଧରି ତାଙ୍କ ହାତେ
ମୋ ରକ୍ତେ ନିକର ତିନ୍ତିବ ଭୂଇଁ ।
ଚଢ଼ି ଘୋଡ଼ା ଖରେ ଆସନ୍ତି ମାଡ଼ି ସେ
ଆମ ପନ୍ଥ ଯେବେ ପାଇବେ ତଳେ,
ମୋତେ ତ କରିବେ କାଟି ବେନି ଖଣ୍ଡ
କେ ରହିବ ବାଳା ସାହା ମହୀରେ ?"
ଫେଇ ମନକଥା କହିଲା ନାଉରି;
"ଯିବ ମୁଁ ମଣିମା ଅଛୁ ତିଆର,
ଦେଲେ ଦିଅ ମୂଲ, ନ ଦେଲେ ନ ଦେବ
ଏ ବାଳାଙ୍କ ଲାଗି ଯିବାର ମୋର ।

ମୋ ଗୁଣ ପକାଇ କହୁଛୁ, ଆପଦେ
କ୍ଷଣେ ଏଥି ନାହିଁ ରହିବେ ବାଳୀ;
ମେଘ ବରଷୁଛି, ବଞ୍ଚାସି ପିଛୁ
ହେଉଥିଲ, ମୁ ଭୂଗରେ କରିବ ପାର ।"

ଘନୁଁ ଘନ ବଢ଼ି ଆସେ ବାଆପାଣି
ଡାକଣୀ ଡାକଇ ବିକଟ ଘଟେ;
ଏଥି ଦୁର୍ଘଟଣ ଦେଖି ବେନ ଜନ
ପ୍ରେମିକ ହୃଦୟ କମ୍ପଇ ତ୍ରାସେ ।

ପବନ ବୋହିଲା ଘୋର ଅଣଗୁଣ
ବିଜନ କାନନ ଆସିଲା ଘୋଟି,
ପାରିକୁଦ ଦନ୍ତେ ଘୋଡ଼ାଟାପୁ ନାଦ
ନିକଟୁ ନିକଟ ଶୁଭିଲା ଅତି ।

"ଚଳ, ବେଗେ ଚଳ," ଭଣନ୍ତି କୁମାରୀ,
"ବାଆ ପାଣି ଭଡ଼େ ହେଉଛି ସତ;
ଏ ବହ୍ନି କୋପ ମୁଁ ଭେଟିବି ହରଷେ
ନ ଭେଟିବି ଛାତ କୁପିତ ହାତ ।"

ଶ୍ୟାମ ଭୂଇଁ ପୃଷ୍ଠ ଛାଡ଼ିଲା ନାରୀ,
ଦୁଷ୍ଟ ସିନ୍ଧୁ ବକ୍ଷ କରିବ ପାର;
ବାଆ ପାଣି ଭୟ ହେଲା ଏଡ଼େ ଟାଣ
ଘୋର ନରହାତ କି ପାରେ କରି ?

ତେବେ ହେଲେ କାତ ମାରି ସେ ଚାଲୁଛି,
ନ ମାନେ ବଞ୍ଚାସି ନାଉରୀ ତନେ;

କନକା ନୃମଣି କୂଟକ ହୋଇ ଉଚ୍ଚ,
ଦେଖନ୍ତି ସତତ ତାଣ୍ଡବ ମାରେ ।
ବାପ ହୋଇ ନିଜେ ଜନ୍ମ ଦେଇଛନ୍ତି
ପାଳୁଛନ୍ତି ସ୍ନେହୁଁ ଅଧିକ କରି;
ବାଲ୍ୟ ଅପରାଧେ ନିମିଷ ସରାଗେ
ଫିଙ୍ଗି ହୃଦପୀଠୁଁ ଦେବେ କପରି ?
ଅନାଇ ଦେଖନ୍ତି, ବଢାପି ଅନ୍ଧାରେ
ବୁଡ଼ୁଛି ଦୁହିତା ଅତଳ ଜଳେ;
ଉଠିବା ପାଇଁରେ ଟେକି ଏକ ହାତ,
ବେଢ଼ାଇଛି ଆନ ପତ୍ରଙ୍କ ଗଳେ ।
"ଫେରିଆ, ଫେରିଆ" କହିଲେ ବିଷାଦେ,
"ଫେରିଆ ଗୋ ମାଆ, ନ ଯାଅ ଆଉ,
ହେଲ ଯା ହେବାର, ଫେରି ତୁ ଆଇଲେ,
ତୋ ପଥରେ ନାହିଁ ଛୁଇଁବ କେହୁ ।"
କି ହେବ, ଏଡ଼ିବ ବିଧି ଘଟଣ କେ
ଏକା ପବନକେ ବୁଡ଼ିଲା ନାଆ,
ଝିଅ ମିଶିଗଲା ଚିଲିକା ତରଙ୍ଗେ
ନୃମଣି ବାହୁନି କାନ୍ଦନ୍ତି ଆହା ! *

* ଘଟଣାଟି କଳ୍ପିତ; ବିଷୟ ସହଜବୋଧ କରିବା ନିମନ୍ତେ ସ୍ଥାନମାନଙ୍କର ନାମ ଓଡ଼ିଶାର ସ୍ଥାନମାନଙ୍କର ନାମ ଅନୁସାରେ ଦିଆଯାଇଛି ।

## ଶୂନ୍ୟମନେ

ପଣ୍ଡିତ ଗୋଦାବରୀଶ ମିଶ୍ର

ଶୂନ୍ୟମନେ ତରୁତଳେ ବସିଛି ମୁଁ ଏକା,
କେତେ କଏ ଆସି ବାରେ ଦେଇଯାନ୍ତି ଦେଖା;
କାନନର ତରୁଲତା,
କୁସୁମର ମଧୁରତା,
ମୃଦୁ ଖେଳେ ସମୀରଣ,
କୋକିଳର କୁହୁ ସ୍ୱନ,
ମଧୁମାଛି ଗୁଞ୍ଜନର ଶ୍ରୁତି ମାଧୁରିମା
ସୁଦୂର ଗଗନ ଅଙ୍କେ ଅନନ୍ତ ନୀଲିମା ।
ନିଜ ନିଜ ପଥେ ଆସି, ମୋ ହୃଦ ଦୁଆରେ
ନିମିଷକ ଦରଶନ ଦେଇଯାନ୍ତି ବାରେ ।
ସରବେ ସେ ହୃଦେ ମୋର
ଅଜଣା ଅଶାନ୍ତି ଘୋର,
ତଳେ ତାଙ୍କୁ ଭବେ ମୋର ନ ଲୋଡ଼େ ପରାଣ,
କି ଦୂର ଅପ୍ରାପ୍ୟ କାହିଁ ରହିଛି ଧିଆନ ।
ଶୂନ୍ୟମନେ ତରୁତଳେ ବସିଛି ମୁଁ ଚାହିଁ,
କେତେ କଏ ଆସି ବେଗେ ଯାଆନ୍ତି ପଳାଇ ।
ଶୂନ୍ୟ ମୋ ନୟନ ଆଗେ
ରେଖାର ମାରବେ ଏବେ
ମୋ ନିଷ୍ଫଳ ଅବସରେ
ଫୁଲଟିଏ ଝଡ଼ ଆହା ଅନାଏ ସରାଗେ !

ଦେଖିବାକୁ ହସ ଡାର
ନାହିଁ ଟି ମୋ ଅବସର
ଯିଏ ସବୁ ଯାଇଥିଲ
ଫେର କାହିଁ ଆସିଗଲ;
ମୋ କୁଟୀରେ ପୂର୍ଣ୍ଣ ଏବେ ଅପୂତ ଅତଥି,
ସଭଙ୍କି ଦଏ ମୁଁ ସୁଖେ ମିଳନ ପୀରତି ।
ସରବେ ମୋ ପଞ୍ଚଶତ
ପୂରୁଣା ପରାଣ ମିତ ।
କଞ୍ଚତ ଯେ ଭେଦ ନାହିଁ ତହିଁ,
ଆଲଙ୍ଗନେ ହୃଦେ ରଖେ କହି ।
ତାଙ୍କ ସଙ୍ଗେ ମୁହିଁ ପୁଣି ହୋଇଯାଏ ଜଣେ;
ଆନ କେହି ନାହିଁ ପାଶେ,
ଆନ ଜ୍ଞାନ ନାହିଁ ଆସେ
ମୁଁ ଏକ ଅତିଥି ମହା ଅତଥି ମିଳନେ ।

ଶୂନ୍ୟମନେ ତରୁତଳେ ବସିଥିଲି ଏକା,
କିଏ ଆସି କେବେ ମୋରେ ଦେଇଗଲା ଦେଖା;
କିଏ ଚାଲିଗଲା ମୋର ଦୁଆର ଫିଟାଇ,
ଏ ସମ୍ପଦ ମୋ କୁଟୀରେ ଦେଇଗଲା ଥୋଇ,
କାହିଁ ହଟେନେଇଗଲା ମୋ ଧାନ ପସରା;
ଶୂନ୍ୟମନେ ବସିଥିଲି ପରା ।



# ଯୌବନର ଅଭିଯାନ

ପଦ୍ମଚରଣ ପଟ୍ଟନାୟକ

କଏ ଏହୁ ଆଜି ଚଳି ଜୈତ୍ରଯାତ୍ରା କର ଗୋ,
ପାଶେ ଶୁଭେ ମହାରବ ଧର ଧର ଧର ଗୋ ।
ଏ ଯେ ଅଭିନବ ସେନା ନବ ଅଭିଯାନ ଗୋ,
ନବ ନବ ଅସ୍ତ୍ରଶସ୍ତ୍ର ନବ ତୀର ବାଣ ଗୋ ।
ଢାଲ, ବାଣ, ତରବାରୀ, ସବୁ ନୂଆ ନୂଆ ଗୋ,
ନରପାଶେ ନାସ୍ତିଦଳ ଏ ସୈନ୍ୟରେ ଠିଆ ଗୋ !
ନାହିଁ ତଳେ ରକ୍ତପାତ ଚୂଳି ଚଳେ ଗୋପନେ;
ଜେତା ପାଶେ ପରାଜିତ ହସେ ନିଜ ମରଣେ ।
ନବତେଜ ନବଶକ୍ତି ଅଙ୍ଗେ ଅଙ୍ଗେ ଭରି ଗୋ,
ଶୋଭା ଧଉରିଭେ କ୍ଷଣେ ଦୂରେ ବସୁନ୍ଧରା ଟୋ !
ତରଳ ଅପାଙ୍ଗ ପାଶେ ସ୍ମିତ ହୁଏ ଠିଆ ଗୋ,
କ୍ଷଣେ କ୍ଷଣେ ଉଚ୍ଚାଟନ ବଢ଼ାଉଇ ହିଆ ଗୋ ।
ନାହିଁ ସ୍ୱେଦ, ନାହିଁ କ୍ଲେଦ, ନାହିଁ ଭେଦଜ୍ଞାନ ଟୋ,
ଯେହୁ ଦେଖେ ମନ୍ତ୍ରମୁଗ୍‌ଧ ବିଚଳିତ ପ୍ରାଣ ଗୋ !
ବାଧା-ବିଘ୍ନ ଭୟ-ଭ୍ରାନ୍ତି ସବୁ ଯାଏ ଘୁଞ୍ଚି ଗୋ,
ପ୍ରେମର କିରଣେ ଯାଏ ଅନ୍ଧକାର ଲୁଚି ଗୋ ।
ଉଚ୍ଚ ହିମାଳୟ ଶିର ପଡ଼େ ବେଗେ ନଇଁ ଗୋ,
ସପ୍ତସିନ୍ଧୁ ବ୍ୟବଧାନ ନପାରଇ ରହି ଗୋ !

କୋମଳ ଚରଣେ କଣ୍ଟା ଫୁଟି ରକ୍ତ ଝରେ ଗୋ,
ହସି ହସି ପୋଛେ ନାରୀ ନିଜ ପଣତରେ ଗୋ ।
ଆସ ହେ ଯୌବନ, ଦିଅ ଦେଶ ଶିରେ ଟୀକା ଗୋ,
ଲୁଚିଯାଉ ଶ୍ଲଥଚର୍ମ ଶୂନ୍ୟ ବକ୍ଷପିଞ୍ଜିକା ଗୋ !
ଲଲାଟେ ଚନ୍ଦନ ଦିଅ ଗୋରୋଚନା ଘୋଟି ଗୋ,
ବଦନେ କୁଙ୍କୁମ ନେତ୍ରେ ସ୍ନେହାଞ୍ଜନ ବୋଳି ଗୋ !
ଶିରେ ଦିଅ ପାଟଛତା ନବ ଶିରସ୍ତ୍ରାଣ ଗୋ,
ନବରାଜ ଦରବାରେ ବଢ଼ି ଯାଉ ମାନ ଗୋ !
ଲୁଚିଯାଉ ଭେଦଭ୍ରାନ୍ତ ଖର୍ବତା ଅଳୀକ ଗୋ,
ଗାଇଉଠୁ କୁଞ୍ଜେ କୁଞ୍ଜେ ନବତାନେ ପିକ ଗୋ !
ନୂଆ ରାଗରାଗିଣୀରେ ହେଉ ଦେଶ ଭରା ଗୋ,
ନବପ୍ରାଣେ, ନବତାନେ ଭରିଉଠୁ ଧରା ଗୋ ।
ଶତାବ୍ଦୀର କ୍ଲେଦ ଭେଦ ହେଉ ଭସ୍ମ ଛାର ଗୋ,
ମାତୃଭୂମି କଣ୍ଠେ ଶୋଭୁ ହୀରକର ହାର ଗୋ ।
ଶିରେ କୋହିନୂର କଣ୍ଠେ କଉସ୍ତୁଭ ରାଜୁ ଗୋ,
ସ୍ୱପର୍ଣ୍ଣୀ ମନ୍ଦିର ଶଙ୍ଖ ପୁରେ ପୁରେ ବାଜୁ ଗୋ ।
ଯୁଗ-ଯୁଗ ଅନ୍ଧକାର, ଅତ୍ୟାଚାର ଭୁଲି ଗୋ,
ମାତୃଭୂମି-ବକ୍ଷ ଉଠୁ ପୁଣି ଗର୍ବେ ଫୁଲି ଗୋ ।
ଛୁଟୁ ଶିରା-ପ୍ରଶିରାରେ ଶୋଣିତର ଧାରା ଗୋ,
ହସୁ ଏ ଆନନ୍ଦ ଦେଖି ସରଗର ତାରା ଗୋ ।
ରାଜରାଣୀ ପାଉ ପୁଣି ରାଜରାଣୀ ମାନ ଗୋ,
ପୃଥିବୀ ପୃଷ୍ଠରେ ରହୁ ମୋ ଜନମ ସ୍ଥାନ ଗୋ !

*

# ବୀଣାର ଅଭିମାନ

ପଦ୍ମଚରଣ ପଟ୍ଟନାୟକ

କହୁଛ ପ୍ରିୟେ, କି ଗୀତ ଗାଇ
ଭଣିତା କରି ଦେବ ପଠାଇ
ଏ ମଧୁମାସ ବଜାରେ !

ନାହିଁ ସେ କଣ୍ଠ, ନାହିଁ ସେ ସ୍ୱର,
କି ଅଣେ ଯନ୍ତ୍ରେ ଦେବ ମୁଁ କର
ମଣିବ ସିନା ଲଜ୍ଜାରେ !

ଆଜକା କଥା କାଲକି ଫେର
ଘୂରନ୍ତା ଧରା ଦେଲଣି ଢେର,
ଘଡ଼ିକେ ଘଡ଼ି ବଦଳ,
ଆଜ ଯେ ଖାଣ୍ଟି, କାଲ ସେ ମାଟି,
କାଲ ସେଟେନେଣ୍ଟେ ଆଜ ଉକୁଟି,
ପ୍ରେମେ ଲାଗଇ କଜ୍ଜଳ ।

ଚମ୍ପା ମରୁଆ ତଗର ମଲ୍ଲୀ
ଢାଳଇ ସିନା କୁଟୀର ପଲ୍ଲୀ,
କେବେ ଯୋଗାଏ ଗୋଲାପ;
କେବେ ବା କଥା ହରଇ ହୃଦ୍ୟା
ରକ୍ତମନ୍ଦାର ରସରସିଆ,
ଆଣଇ ପ୍ରିୟ ସନ୍ତାପ ।

ହୋସେନଦାନା ତେଜରେ ଗନ୍ଧ
ପାଇବ କାହୁଁ କରିବ ଅନ୍ଧ
ଏ ରସବର୍ଜ୍ଜ ସମାଜେ !
ବପୁନ ସୃଷ୍ଟି ନଦିଏ ତୃପ୍ତି,
ନବୀନ କବି ମାଗଇ ମୁକ୍ତି
ନବସୃଜନେ ଅବ୍ୟାଜେ !
ଚାଲ ଗୋ ପ୍ରିୟା ଯିବା ପଳାଇ
ପଲ୍ଲୀ କୁଟୀରେ ଥିବା ଅନାଇଁ,
ଦୂରୁଁ କରିବା ଦର୍ଶନ !
ଫଗୁଣ ହୋରି ରଙ୍ଗ ଗ୍ଭେରାଇ,
ମଳୟ ପିକ ରୁଚ ଛୁଣ୍ଡାଇ
ହୋଇବ ପ୍ରିୟା ମଣ୍ଡନ ।
ସେ ରୂପ ହେରି ମୋହିବ ଚିତ୍ତ,
କ ସୁଖ ଅବା ଦେବ ମୋ ଗୀତ,
ବିଅ ଜଂଜାଳୁ ମୁକତି;
ଏ ଜୀର୍ଣ୍ଣ ବୀଣା ତୁମରି ସଙ୍ଗ,
ତୁମରି ଡାକେ ବାଜଇ ଏହି
ହୋଇ ତୁମ ତୃପତି ।
ତୁମ ଇଙ୍ଗିତେ ତୁମରି ସ୍ପର୍ଶେ
ଏ ତାରଗୁଚ୍ଛ ହଲଇ ହର୍ଷେ
ତବ ନାମଟି ଉଚ୍ଚାରି;
କେବେ ବା ଗଛେ କେବେ ବା ପଦେ
କେବେ ସରଗେ କେବେ ବା ମର୍ତ୍ତ୍ୟେ
ଯାଏ ସେ ସ୍ୱର ସଞ୍ଚାରି ।

ଯାହା ବା ଅର୍ଥ ଯାହା ବା ତାନ
କେବେ ପରଶେ କାହାର ପ୍ରାଣ
ନ ଥାଏ କିଛୁ ଉନ୍ମାଦ;
ଧୂଳିର ଗୀତ ଧୂଳିର ସ୍ୱର
ମାନବ ହୃଦେ ଚଳନ ତାର,
ନ ଥାଏ ପ୍ରୀତି ପ୍ରମାଦ ।

ଘଡ଼ିକ ସୁଖ ଘଡ଼ିକ ଦୁଃଖ
ସ୍ୱଜନ, ପ୍ରିୟ, ପ୍ରିୟାର ମୁଖ,
ରହଇ ବୋଳା ସେ ଗୀତେ;
କେବେ ଚତୁର ମାନିନୀ ମାନ
କେବେ କଠୋର ପୁରୁଷ ଝାଣ,
ଗାଏ ସେ ଗୀତ ସଙ୍ଗୀତେ ।

× × ×

ଏ ଧୂଳିଗୀତେ ଯଦି ବା ମନ
କହ ଗୋ ମୋର ଜୀବନଧନ,
ଊଣା ନ ହେବ ସେ ଗୀତ;
ଯାବତ ପିଣ୍ଡେ ଅଛି ମୋ ପ୍ରାଣ
ମୂକର ବୀଣା ଧରିବ ତାନ
ମୋହିବା ପାଇଁ ତୋ ଚିତ୍ତ ।

× × ×

ପୋଡ଼ା ଜୀବନ୍ତୁଁ ସୌରଭ ଆସି
ଦେଶ ଆକାଶେ ବୁଲିବ ଭସି
ଭରିବ କ୍ଳେଶ ସାନ୍ତ୍ୱନା;

ଯିବ ପଛକେ ଯାଉ ଜୀବନ
କବିତା ମୋର ଲଭୁ ଜନମ
ପୂରୁ ତା ପ୍ରାଣ-ବାସନା ।

ବଡ଼ ଭରସା ରଖିଛି ମନେ,
ହେବ ମୁଁ ଧନୀ କବିତାଧନେ
ବସିବ ଗୀତ ହୃଦୟେ;
ଯୁବାଯୁବତୀ ମୋ ଦେଶେ ବସି
ପଢ଼ିବେ ମୋର କବିତା ରସି
ଯୁଗ-ଯୁଗକୁ ନିର୍ଭୟେ ।

ଏତେ ଭରସା ଏତିକ ଆଶା
କ୍ଷୁଦ୍ର ପ୍ରାଣରେ ଏତେ ପିପାସା
ନ ହେଲା ଯଦି ପୂରଣ,
ଶୋଚନା ନାହିଁ, ନାହିଁ ମୋ ଭୟ
କବିତା ପ୍ରୀତି ହେଉ ଅଦୟ,
ଲଭିବ କବି-ଜନମ । ※

× × ×

※ କବିଙ୍କର ନିଜ ଭାଷାରେ, ପ୍ରଥମ ସଂସ୍କରଣ 'ଗୋଲାପଗୁଚ୍ଛ'ରେ ଲେଖିଛନ୍ତି, "ଏହାର ଜନ୍ମଦିନ ୩।୮।୧୯୨୪। × × ସେ ସମୟରେ କବି ଅନ୍ନଦାଶଙ୍କର ପ୍ରଭୃତିଙ୍କ କବିତା ନବ ରୁଚି, ନବ ଭାବ-ବିଭବରେ 'ଉତ୍କଳ ସାହିତ୍ୟ'ର ଅଙ୍ଗ ମଣ୍ଡନ କରୁଥିଲା । ଲେଖକର ସେହି ସମୟର ସାହିତ୍ୟିକ ନୀରବତାକୁ ଲକ୍ଷ୍ୟ କରି କୌଣସି କୌଣସି ସହୃଦୟ ବନ୍ଧୁ ଯେଉଁ ପତ୍ର ଲେଖିଥିଲେ, ଏ 'ବୀଣାର ଅଭିମାନ' ତାହାର ଉତ୍ତର ମାତ୍ର ।

# ଲେଖା

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

କି ଲେଖା ଲେଖିବି ! ଆଉ ନଚଳେ ଲେଖଣୀ,
ଗୀତ ଗାଇବାକୁ ତୁଣ୍ଡେ ବାଜିଲାଣି ଖଣି;
କୁନ୍ଥା କଲମଟା ଆଜ ପାରୁନାହିଁ ଟାଣି
ସିହାଇଗୁଣ୍ଡାକ ଚେଣେ ଫାଟିଲାଣି ପାଣି ।
ଲେଖୁଥିଲି ଦିନେ,—ଆଉ ଅଛି କି ସେ କାଳ
ହାଡ ଖାଇଗଲାଣିଟି ସେ କାଳ ପଖାଳ ।
ଉଲଟା ହୋଇଛି ଯାଇ ଯାହା ଥିଲା ଦିନେ,
ଏବକୁ ହେଲାଣି ସବୁ କଥା ଭିନ ଭିନେ !
ବସନ୍ତ ଗଲାଣି ଚାଲି—ଆସିଲାଣି ଶୀତ,
ଆମ୍ବଡାଳେ କୋଇଲି ତ ଗାଉନାହିଁ ଗୀତ ।
ଗଲାଣି ମଳୟ, ଏବେ ବହୁଛି ଉତ୍ତର,
ଚୋର ଜହ୍ନ ପଛେ ଆଜ ହସୁନାହିଁ ତରା,
ଫୁଟୁନାହିଁ ପଦ୍ମଫୁଲ ଆଜ ସରୋବରରେ,
ଗୁଣୁଗୁଣୁ ଗାଉନାହିଁ ଅଳି ପ୍ରେମଭରେ ।
ବାଉଳା ସ୍ୱରୂପ ଛୁଟି ହୋଇ ଅଥାନଆ
ଦୁନିଆଯାକରେ ଲାଗିଯାଇଛି ଗ୍ଳାନିଆ ।
ନାହିଁ ସ୍ନେହ, ନାହିଁ ପ୍ରୀତି, ମମତା ଦୂରସ୍ଥ,
ନାହିଁ ଶ୍ରଦ୍ଧା, ଯେଣାଯେଣ, ଚିତ୍ତ ବନମୟ ।

କଶୋଷର ସ୍ନେହରସ, ସହଜ ଅପାଙ୍ଗ
ମଧୁରିଆ ଲାଜ-ଝୁଙ୍କା, ବଚନ ସରାଗ ।
ସଭିଏଁ ତ ସନ୍ତ୍ରବ୍ୟସ୍ତ ଉଦ୍‌ବେଗର ଦାଉ
ଯାଇଅଛୁ ଯୋଚି ଖାଲି ଲାଗିଛୁ ଚଢ଼ାଉ ।
ଦଫା ଦଫା ଧପାଧପି, ଚିନ୍ତା କଟାକଟି,
ପନି ଚଢ଼ାଚଢ଼ି ଆଜି ମୁଣ୍ଡ ଫଟାଫଟି ।
ଲଜେ ସଡ଼ି ସଡ଼ି 'କଳା' ଲୁଚିଲାଣି କାହିଁ,
ଅବା କଳା-ବଜାରକୁ ଗଲାଣି ପଳାଇ ।
ଏହା ସବୁ ଦେଖି ଦେଖି ମୁଣ୍ଡ ଯାଏ ଭ୍ରମି,
ମରମ ଆବେଗ ଯେତେ ପଡ଼ଇ ନରମି ।
ଚପୁଡ଼ିଲେ ଲେଖାରୁ ତ ଗଡ଼ୁନାହିଁ ରସ
ଲେଖିବାର ମନ୍ତୁରିଠା ମିଳେ ଲୋକହସା ।
ଲେଖିବ କାହିଁକି କେହି—ପଢ଼ୁଚି ବା କିଏ,
ବାଇବାକୁ ଯରା ଦୋଇ ଧାଆନ୍ତି ସଭିଏଁ ।
କାହାର ବା ବେଳ ଅଛୁ ବାଜେକଥା ପାଇଁ,
କି ଲଭ ଏଥିରେ ବୃଥା ସମୟ କଟାଇ !
ଯେବେ ବା ପଢ଼ୁଚି କେହି—ସିଏ ଖାଲି ଫାଙ୍କି,
ଦପ୍ତରେ ବୁଲାଇ ନେଇ ଥରେ ମୋଡ଼ି ଆଖି ।
ଡେବଷ୍ଟ ହାତରେ ଦିଏ ଫୋପାଡ଼ି ସେ ଲେଖା,
ପୋଛିଦେଇ ମନକରୁ ତାର ଶେଷରେଖା ।
ଯେତିକରେ ଲେଖକର ବୈତରଣୀ ପାର,
ଆଜି ତାହା ସଙ୍ଗେ ସପ୍ତପୁରୁଷ ଉଦ୍ଧାର ।

*

# ଜୀବନ-ସଂଗୀତ

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

ସବୁଥିରୁ ବଞ୍ଚିତ କରି କେଉଁ ପଣବାନା ଉଡ଼ାଇବ କହ ?
ଯାହା ଦେଇଥିଲ ସବୁ ତ ନେଲଣି,
ଆଉ ଏବେ କଅଁ ଛଡ଼ାଇବ କହ ॥
ସଂସାରେ ଯେ କରେ ଆଶ,
ଧାଏଁ ଯିବା ମୋ ତୁମ୍ଭ ପାଶ,
ସକଳ ଭରସା ଯା'ର ତୁଟିଲାଣି
କସ ବୋଲି ତ କୁ ଡରାଇବ କହ ? ॥
ଠକି ଠକି ଥରକୁ ଥର,
ବୁଝିଲାଣି ତୁମ୍ଭ ଗୁମର,
ମନେ ପାଞ୍ଚୁନ କି ହାତ ମଝିଆରେ
ଛିଣ୍ଡାକରି ବାଟ ହୁହାଇବ କହ ॥
ତୁମ୍ଭ ଫନ୍ଦା ଏଡ଼ିବ ବୋଲି,
ସବୁ ଧନ୍ଦା ଦେଲଣି ଠେଲି,
ସ୍ୱରଦଣ୍ଡ ସେ କାଟିସାରିଲାଣି
କେଉଁ ଫାନ୍ଦେ ତାକୁ ଜଡ଼ାଇବ କହ ॥
ହାତ ଠାରି ଲୋଭ ଦେଖାଇ,
ଡାକ ନାଟ ଦେଖିବା ପାଇଁ,
ସିହାଣ କରୁଛ ଅନ୍ତର ଥରେ କି
ନାକ ଧରି କାନ ମୋଡ଼ାଇବ କହ ॥



# ସୃଜନ-ସ୍ୱପ୍ନ

ଅନ୍ନଦାଶଙ୍କର ରାୟ

ଗୁନ୍ଥିବ ପଦ ଶୁଣ ଗୋ ରାଣୀ
ସେ ନୁହେଁ ମୋର ମରମ ବାଣୀ
ସେ ନୁହେଁ ମନକଥା ମୋ ।

ଯେ ଗୀତ ଦେଲି ସେ ଦନ ଗାଇ
ସେ ଗୀତେ ମୋର ହୃଦୟ ନାହିଁ,
ନାହିଁ ସେ ଗୀତେ ବ୍ୟଥା ମୋ ।

କହୁଛି ସତ, ଶୁଣ ମୋ ମିତ,
ଧ୍ୱଂସେ ମୋର ମନ ନାହିଁ ତ
ସେ ନୁହେଁ ମୋର ବ୍ୟସନ ।

ପ୍ରଳୟ ଧୂମ- କେତୁ ମୁଁ ନୁହେଁ
ନୂତନ ଭୂମି- କର୍ମ ମୁଁ ହେ
ସୃଷ୍ଟି, ସ୍ଥିତି, ନାଶନ ।

ଗୋପନ କରି କ ହେବ ପ୍ରିୟା,
ନୁହେଁ ମୁଁ ଝଡ଼ ନୁହେଁ ମୁଁ ନଆଁ
ନୁହେଁ ମୁଁ ଶମଶାନ ଗୋ ।

ଅନଳ ଆଶେ ଆଦମ ତୃଷ୍ଣା—
ସେ ଚିନା ମୋର ଛଦମ-ଭୂଷା !
ମୋ ତୃଷା ଭୂଷା ଆନ ଗୋ ।

ଆଜ ଏ ଶୁଭ ଶାରଦ ପ୍ରାତ
ଶ୍ୟାମଳ ତୃଣ ଆଲୋକସ୍ନାତ,
ସମୀର ବହେ ମଧୁର ।

ସେଫାଳି ବାସେ ବିହଗ ଗୀତେ
ପାସୋରିଗଲି ଆଚମ୍ବିତେ
ଜଗତ ବ୍ୟଥା ବିଧୁର ।

ତରଙ୍ଗେ ଏ ଉନ୍ମାଦନା—
ମାନବ ମନେ କାହିଁ ବେଦନା ?
କି ଦୁଃଖ ଦୂର କରିବ ?

ଯେଉଁ ହାଟେ ମୁଁ ଦେଖଇ ଚାହିଁ
ଶୋଭାର ଲବେ ଅଭାବ ନାହିଁ,
କେଉଁ ଅଭାବ ହରିବ ?

ପ୍ରଳୟ କଥା ପ୍ରଳାପ ସମ
ଶୁଭୁଛି ଆଜ ଶ୍ରବଣେ ମମ
କି ହେବ କା'ର ବିନାଶେ ?

ଏ ସୁଖ ହାଟେ ଏ ଶୋଭାପୁରେ
ଧ୍ୱଂସଲୀଳା ରହୁ ଗୋ ଦୂରେ
ମିଥ୍ୟା ମୋହ ସିନା ସେ !



# ସତ୍ୟ ହେଉ ଉଷା ଅଭ୍ୟୁଦୟ

ବୈକୁଣ୍ଠନାଥ ପଟ୍ଟନାୟକ

୧

ହେ ସିନ୍ଧୁ, ହେ ବନ୍ଧୁ ମୋର ! ଦେଖି ଏ ପ୍ରଳୟଙ୍କର ବେଶ
ସର୍ବାଙ୍ଗେ ପୁଲକ ଜାଗେ ! ଲଭି ବନ୍ଧୁ-ପୁରାଣ-ଆଶ୍ଳେଷ ।
ସୂଚୀଭେଦ୍ୟ ଅନ୍ଧକାରୁ ଝଡ଼ ବାତ୍ୟା ହେଉଛି ପ୍ରସୂତ,
ଶିର ତୋଳି ଲକ୍ଷ ଢେଉ ଯୁଦ୍ଧ ମାଗେ ଯେହ୍ନେ ଜୀବନ୍ମୃତ ।
ପ୍ରଳୟ ଶୀତଳ ଶ୍ୱାସ ବାଜି ଅଙ୍ଗେ ଚେତଇ ଲୁପ୍ତ ଆଶା,
ହୃଦ୍‌ବଳୟ ଭେଦ ଫୁଟେରେ ପୁରାଣ-ଯୁଗର କାବ୍ୟଭାଷା ।
ଅନବଦ୍ୟ ଆଲୋଡ଼ନ ! ଅବ୍ୟକ୍ତ ଏ ପ୍ରଳୟ ଆନନ୍ଦ !
ବିପର୍ଯ୍ୟସ୍ତ ପରଂପରା ଜୀବନ ଐତିହ୍ୟେ ଲାଗେ ଦ୍ୱନ୍ଦ୍ୱ ।
ବିଜୁଳି ଚମକେ ହସେ ଆଗାମୀ ଯୁଗର ନରଶିଶୁ,
ଉଷାନ୍ତ୍ର ସୁନ୍ଦର ନେତ୍ର, ତା ପୌରୁଷ ସ୍ନିଗ୍ଧ ଏ କୁଳଶୁଁ ।
ଏ ଆନନ୍ଦ ଲଗ୍ନେ ବନ୍ଧୁ, ବକ୍ଷ ପରେ ମୋର ଯାଅ ବହି !
ଗ୍ରାସ କର ଜୀର୍ଣ୍ଣ ଧରା ! ଅର୍ଦ୍ଧପଥେ ଯାଅନାହିଁ ରହି ।
ଧୀରେ, ଦୃଢ଼ ପଦକ୍ଷେପେ ପ୍ଳାବ ପାପସ୍ତୂପ କର କ୍ଷୟ;
ଲୁପ୍ତ ହେଉ ଜୀର୍ଣ୍ଣ ସୃଷ୍ଟି ! ନବୀନ ଉଷାର ହେଉ ଜୟ !

୨

ଗର୍ଜିଉଠ ଫେନଚୂଡ଼ ! ଆଦ୍ୟ-ସୃଷ୍ଟି-ପ୍ରଳୟ-ତାଣ୍ଡବ
ଖେଳିଯାଉ ହୃଦ୍‌ବନ୍ଦରେ ଫୁଟୁ ଜୀବନ ଅଭିନବ !

ଏ ସୃଷ୍ଟି ତୁମର ସ୍ୱପ୍ନ; ହେ ଅର୍ଣ୍ଣବ, ପ୍ରାଣମୂଳାଧାର !
ଜନ୍ମାନ୍ତ୍ରି ବକ୍ତୃକୁ ସଂକୁଚିତ କରି ବା ସଂହାର ।
ସତ୍ୟ ହେଉ ଆଦ୍ୟଧ୍ୱନି ଏ ବନ୍ଧ୍ୟାର ଆଲୋକ ଚେତନା,
ଲୁପ୍ତ କର ଛନ୍ଦ ନୃତ୍ୟ ପ୍ରପଞ୍ଚ ଏ କଳାର ଛଳନା ।
ଦଗ୍ଧୋଳ ନର୍ଦ୍ଦୋଷେ ପ୍ଲାବି ସତ୍ତ୍ୱ ତବ କର ପ୍ରକାଶିତ,
ଆବରେ ମୁଦିବ ନେତ୍ର କ୍ଲାନ୍ତ କବି ଶୁଣି ସେ ସଙ୍ଗୀତ ।
ଲୁପ୍ତ ହେବ ଯୁଗବ୍ୟାପୀ ଜୀର୍ଣ୍ଣ-ଧନ-ଶୋଣିତ-ଶୋଷଣ,
ମୃତ, ଅର୍ଦ୍ଧ-କବଳିତ କୋଟି ଶିଶୁ ଶପନ୍ତ କନ୍ଦନ ।
ମିଥ୍ୟା ଅନାଗ୍ରହ ଚୌର୍ଯ୍ୟ, ବାଣୀକର ଧର୍ମ ବ୍ୟଭିଚାର,
ଅର୍ଣ୍ଣବ ପରମ ସ୍ରଷ୍ଟା ପ୍ଲାବନରେ କର ହେ ସଂହାର ।
ପୂରଣ ମୁଁ କୃଷ୍ଣ ପଥ ! ସେ ପ୍ଲାବନେ ଲଭିବ ଆଶ୍ରୟ,
ମହାନ ନବୀନ ସ୍ୱପ୍ନେ ! ସତ୍ୟ ହେଉ ଉଷା ଅଭ୍ୟୁଦୟ ।



# ନୂଆଖାଲି

ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ

ନୁହଇ ଆଲ୍ଲା                ନୁହଇ ରେ ଖୋଦା
    ବିଷ୍ଣୁ ବା ଜଗନ୍ନାଥ !'
ଜାଣିପାରୁନାହୁଁ                ଚଣ୍ଡଭୋଳା, ପଶୁ
    ମଣିଷ ମାରଇ ଘାତ ।

ହେ ଶିବ ଜନତା !                ଉଦାସ ମୌନ,
    ତେହର ଭାଗ୍ୟ-ସୂତ୍ର
ରହିଛି ଗୁପତେ                ମଣିଷର ହାତେ
    ଧରନ୍ତେ ନପାରୁ ଭାବ ?

ତୋହର ଭକ୍ତ ସେ                ଇଚ୍ଛାରେ ତାର
    ତୋ ଘରେ ଜଳାଇ ନିଆଁ
ପାଟଲି ତୋ କ୍ଷେତ                ଭସ୍ମ କରି ସେ
    ତୋ ଗାଲେ ଲଗାଏ ଚଥାଁ ।

ଗାଆଁ ଗାଆଁ ଗୃହ                ଭସ୍ମ ହେଲା ରେ
    ଆଖିମିଟିକାରେ ତା'ର
ବୈକୁଣ୍ଠ ହେଲା                ତୋହର ଧରଣୀ
    ଶ୍ୱବସ୍ତ୍ର ନାରଖାର ।

• ଡାକଲ "ଆଲ୍ଲା !                ଅବତାର ମାନ
    ରଖ ନୀଳାଚଳନାଥ !"

ପୁରାଃ ଯୁଗର ଦ୍ରୌପଦୀ, ସୀତା
ଉପରକୁ ଟେକ ହାତ ।
ଜବାବ କେ ଦେଲ ଅନ୍ୟ ହସିଲ
ଶୁଣି ନପାରିଲୁ କାଲ !
ତା'ର ଇଙ୍ଗିତେ ସଜାହେଲ ଶତ
ଶୂଳ ହଣ୍ଡିଆର ଢାଲ ।
ସେଇ ହତାଶନେ. ଶିଶୁଏ ତୋ ହେଲେ
ମୀନ ମାଛ ପରି ପୋଡ଼ା
ଜଡ଼ ଅଖି ଆଗେ ଜମା ହେଲ ମଡ଼
ଚ୍ଛଲିଲେ ସୈନ୍ୟ ଘୋଡ଼ା ।
ଉଜ୍ଜ୍ୱଳ ଦିନ- ଆଲୁଅରେ ତୋର
ଘରଣୀଙ୍କ ନେଲେ କାଢ଼ି,
ପୋଛିଲ୍ ତୋ ସଖି କାଚ ସିନ୍ଦୁର
ପିଆଇଲ୍ ତାଙ୍କୁ ତାଡ଼ି ।
ଅଶୀ ବର୍ଷର ବୃଦ୍ଧା ଜନନୀ
ଜାବୁଡ଼ାରେ ପ୍ରାଣ ନେଲ୍,
ପଶୁ ପରି ଗୃହ୍ଣ, ଜାଣିପାରୁନାହିଁ
ପଶୁ କେ ମଣିଷ ଡେଲ ?
ସେଇ ତୋର ପ୍ରଭୁ ସେ ତୋର ଶାସକ
ଜଗନ୍ନାଥ ସେ ଖୋଦା,
ତାଙ୍କୁ ଶୋଷ କଲେ ଅପୂତ ତୋ ଶିର
ଇଙ୍ଗିତେ ପଡ଼େ ବୋଦା ।
ମୂର୍ଖ ନୋହୁ ତୁ ଜଡ଼ ଅବା ମଡ଼ .
ଅମୃତ ପ୍ରାଣାଧାର,

ବଣ ଅଜଗର ଚରନ୍ତି ଗୃହରେ
ସୃଷ୍ଟି ଭସ୍ମ-ସାର ।
କଷିଳ ଜନତା ଦୁର୍ଦ୍ଦମ ପ୍ରାଣ
ପ୍ରଳୟଙ୍କର ରୁଦ୍ର !
ଶାର୍ଦ୍ଦୂଳ ଘରେ ଆଉ କେତେ ଦିନ
ନାଚିବ ଶଶକ କ୍ଷୁଦ୍ର ?
କେତେ ଦିନ ପ୍ରଭୁ କ୍ରୀଡ଼ନକ ହେବୁ,
ଶୋଇଥିବୁ ପାରି ଗାଲ ?
ନ ଚେତିଲେ ତୁହ୍ମ ଲକ୍ଷ ଗାଁରେ
ପଡ଼ିଯିବ ନୂଆଖାଲି ।
ନ ଚେତିଲେ ତୁହ୍ମ ଦ୍ରୌପଦୀ ମାନ
ଆଜି କେ ରଖିବ କହ ?
ଡାକଇ ଆର୍ତ୍ତେ ବୃଦ୍ଧା ଜନନୀ
ବୁଭୁକ୍ଷୁ ଶିଶୁ ସହ ।
ଦୁର୍ଦ୍ଦମ ଗଣ ! ଶକ୍ତିକ ତୋର
ଥରେ କର ସମବେତ,
ଭସ୍ମେ ଉଠିବ ସ୍ୱର୍ଣ୍ଣ ଲଙ୍କା
ହସିବ ତୋ ସୁନା କ୍ଷେତ ।



# ଜଡ଼ଦର୍ଶନ

କାଳନ୍ଦୀଚରଣ ପାଣିଗ୍ରାହୀ

ମରଣ ଆସଇ ଲୁଚି ଚରଣ ଚଳାଇ ଧୀରେ
ଫୁଙ୍କିଯାଏ ଜୀବନର ଦୀପ
ନ ଦେଖାଇ ରୂପ ତା'ର ନ ଜଣାଇ ଆଗମନ
ନ ଶୁଣାଇ କାହିଁ ପାଦକ୍ଷେପ
ଜଳଜଠେ ବର୍ଣ୍ଣବୋଡ଼େ ପୁଣି କାହିଁ ଜୀବନର
ନବ ନବ କେତେ ଦୀପାବଳୀ,
ଜନମ ଦିବସ ସମ ଜୀବନ ମରଣ ଖେଳ
ସହଜରେ ଯାଏ ସେ ଯେ ଚଳି ।

କି ଉଦ୍ଦେଶ୍ୟ ଏ ସୃଷ୍ଟିର, କି ସନ୍ଦେଶ, କିବା ତାର ବାଣୀ,
କି ଅମୂଲ୍ୟନିଧି ଭୁଲେ ଅବିଶ୍ରାମ ଟାଣିହୁଲେ ପ୍ରାଣୀ ।

ଲଭେ କିବା ଆସି ଏଥି କି ହଜାଏ; ସେ ହିସାବ କାହିଁ ?
ଦେଖିବା ଶୁଣିବା ଯେତେ ରହେ ବାକି, ଅନ୍ତ ତାର ନାହିଁ ।
ଅବୋଧ ଜୀବନପଥେ ସମଦୁଃଖୀ ସାଥୀ ଅଗଣିତ,
ନାହିଁ ରୂପ, ନାହିଁ ଚିହ୍ନ, ସବୁ ଆଜି ପାସୋରିହୋଇଛି ।
ବେଳାର ବାଲୁକା ସମ ଜୀବନରେଣୁ ଯାଏ କ୍ଷଣେ ଉଡ଼ି,
ପଡ଼ିରହେ ବାକି ସବୁ ଚିରନ୍ତନ ଜଡ଼ତା ଜାବୁଡ଼ି ।
ଯେତେକ ରୂପ ଅବୟବ ସବୁଠାରୁ ଦିଶେ ହୋଇ ବଡ଼
ରୂପାନ୍ତର ହୋଇ କେତେ ହୋଇଛି ସେ ଜଡ଼ ଖାଲି ଜଡ଼ ।

ଯାଉଛନ୍ତି ମିଳାଇ କାହିଁ ଜଳେ ସ୍ଥଳେ ଆକାଶେ ଆଲୋକେ,
କେବେ ସୁଖେ ହସି ଏଥି ଲୁହ ଢାଳି କେବେ ମହାଶୋକେ ।
ଚାଲିଥାଏ ସାଥୀମାନେ ଜୀବନର ଉଦ୍ଦଣ୍ଡପ୍ରବାହ,
ଯାଏ ନଇ କାହିଁ ଶୁଣି ମଧ୍ୟାହ୍ନର ତୀବ୍ର ବହ୍ନିଦାହ ।

ସଦାପ୍ସୁ ଘେନଇ ଶିଶୁ ଜନମାର କ୍ରୋଡ଼ୁଁ ହୋଇ କ୍ଲାନ୍ତ,
ଯାଏ ରଖି ଧରାପରେ ସୁକୋମଳ ତାର ପଦଚିହ୍ନ ।
ଅଗଣିତ ପଦଚିହ୍ନ ବକ୍ଷେ ଧରି ଯେ କରେ ବିହାର
ଜଡ଼ରୂପା ହେ ଧରଣି ! ଘେନ ଏ ଜୀବର ନମସ୍କାର ।

କୋଟି ଚନ୍ଦ୍ର ଗ୍ରହ ତାରା ଜଳିଉଠେ ଯେ ଆଲୋକ ଲଗି
ଘନ ତମିସ୍ରାର କୋଳେ ଯେ ଆଲୋକ ଧାରା ଉଠେ ଜାଗି ।
ଜଳେ ପୁଣି ସିନ୍ଧୁ ବକ୍ଷେ ଗିରିଚୂଳେ କାଳାନଳ ସମ,
ଜଡ଼ରୂପୀ ହେ ଅନଳ, ଅଗ୍ନି ତବ ପଦେ ନମୋନମ ।

ଯୁଗ ଯୁଗ ଧରି ଗଢ଼ା ସଭ୍ୟତାର ପ୍ରାସାଦ ମହତ
ମୁହୂର୍ତ୍ତେ ଫାର ଯେ କରି ରେଣୁ ସଙ୍ଗେ ସବୁ ପରିଣତ ।
ଧ୍ୱଂସର ଦୁନ୍ଦୁଭି ବାଇ କବଳିତ କରି କୋଟି ପ୍ରାଣ
ଝଞ୍ଜା ଯୁଦ୍ଧ ଭୂମିକମ୍ପରୂପେ କରି ଜିହ୍ୱା ଲେଲିହାନ ।

ହେ ଜଳ ପବନ ଅଗ୍ନି ମୃତ୍ତିକା ଆକାଶ ମହାଭୂତ
ଯାହା ଘେନି ଧରେଁ ପ୍ରାଣ ଯାହା ଛାଡ଼ି ଶେଷେ ହୁଏ ମୃତ,
ତୁମେ ମୋର ଆଦି ଅନ୍ତ ତୁମେ ମୋର ସବୁ ସାନ ବଡ଼
ତୁମେ ସତ୍ୟ ସନାତନ ଜ୍ଞାନରୂପୀ ଜଡ଼ ଆଉ ଜଡ଼ ।



# ଆଗାମୀ

କାଳନ୍ଦୀଚରଣ ପାଣିଗ୍ରାହୀ

ବଜ୍ର ଗରଜଇ, ସଘନ ବହେ ବାୟୁ
ମଲ୍ଲିକା କଳି ସମ ଝଡ଼େ ମୋ ପରମାୟୁ !

ଅସୀମ ସମୟର କୋଳେ ସେ ହୁଏ ଲୀନ
ଅଗାଧ ଜଳନିଧି ତଳରେ ଯଥା ମୀନ !

ବନ୍ୟା ସମ କେତେ ଆସଇ ଶୋକ ମାଡ଼ି
ପଲକେ ଅକରୁଣ ଆଘାତ ଯାଏ ମାରି

ଝରିଯାଏ ଦେହ ପାଦରୁ ଖସେ ଭୂଇଁ
ଅଛି ବା ନାହିଁ ନିଜେ ନ ପାରେ ବୁଝି ମୁହିଁ !
ତଥାପି ଦୁନିଆକୁ ଦାରୁଣ ହସ ହସି
ଆଗାମୀ କାଳର ମୁଁ କବିତା ରଚେଁ ବସି !

ଶରତ ସକାଳର କାକର ପରି ମୃଦୁ
ବାସନା ଆସି କେତେ ମିଳାଇଯାଏ ହୃଦୁ !

ଶରତ ସକାଳର ଶେଫାଳି ଫୁଲ ପରି
ଦିନକ ପରେ ଝିନ ମାରିବେ ପଡ଼େ ଝରି !

ଜୀବନେ ଯେଉଁ କଥା ହୋଇଲା ଦୁର୍ବହ
ସ୍ମୃତିରେ ଲୁହା ସମ ଗାଢ଼ିଲା ଠହଠହ

କି ଅଛି ପରିଣାମ କି ଅବା ତା'ର ଗତି
ବଜ୍ରସମ ସ୍ୱନେ ହେବ କି ଉତ୍ପତ୍ତି ?
କାଳର ଦଣ୍ଡଧର ନିଶ୍ୱାସ ଶିବ ଶଶୀ
ଆଗାମୀ କାଳର ମୁଁ କବିତା ରଚେ ବସି !

ଯୋଡ଼ିଲି ଛନ୍ଦ ମୁଁ ସ୍ୱପ୍ନିଳ ଜୀବନର
ଖେଳିଲି ନିତି ଯହିଁ ବିଶ୍ୱ ଚରାଚର
ବ୍ୟକ୍ତି ମରଣକୁ କରି ସେ ଉପହାସ
ବେଦନା ଶୋକ ତାପେ ପାରନ୍ତି କରି ଦାସ !
ଉଠଇ ନାଚ ଯହିଁ ଊର୍ମି ନିରନ୍ତର
ବ୍ୟକ୍ତି ନ ଗଣି ସେ କିଏ ବା ନିଜ ପର
ଦିଶଇ ସେ ଜୀବନେ ସବୁରି ଅଛି ମୂଲ
ବୁଝଇ ନର ତହିଁ ପଶିଲେ ନିଜ ଭୁଲ
ପଶିଲେ ପର ଦୁଃଖ ପାରଇ ଅନୁଭବ
ଆଗାମୀ କାଳର ମୁଁ କବିତା ରଚେଁ କବି !

ପୁରୁଣା ଅଛି ଯେତେ ନୂଆର ସପକ୍ଷତ
ନିଏ ସେ ବାଛି ଚହ୍ନି ନିଜର ଯାହା ସ୍ୱତ
ମିଳାଏ ଅନ୍ଧାର ତାହାର ମହାତେଜେ
କୋଟିଏ ସୂର୍ଯ୍ୟର ରଶ୍ମି ଆଣେ ସେ ଯେ !
ମରଣ-ମୁଖୀ ଯେତେ ଶତ୍ରୁ ଶର ଧାର
ଛଳନା ମିଛ ପାଇଁ ବନ୍ଦ କରେ ଦ୍ୱାର

ଦୁନିଆ ପରେ ଯେତେ ବଢ଼ିଛି ଅକାରଣ
ତାହାର ପରଶୁରେ କାଟଇ ସବୁ ପଣ
ତାହାର ପରଶୁରେ ମୁକ୍ତ ହୁଏ ଧରା
ମୁଁ ସେହି ଜୀବନର କବିତା ରଚେଁ ପରା !

କବିତା ଗଢ଼େ ଏକ ସୁସ୍ଥ ସମାଜର
ସବୁରି ପାଇଁ ଯହିଁ ବର୍ଷରେ ହେଲେ ଘର ।
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ
ଦୁଇଟା ଲୁଗା ଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ଟିଳେ
ବେକାର ରହିବାକୁ ନାହିଁ କ ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର
କହିବା ପାଇଁ କଥା ସବୁରି ଦାବି ଅଛି
ମୁଁ ସେହି ସମାଜର କବିତା ବସେଁ ରଚି !

ନାହିଁଟି ଅଧିକାର ମରିବା ଲାଗି ଯହିଁ
ଭିକ୍ଷା ଅନାହାରେ ତାଡ଼ନା ଖାଇ ସହି,
ମରିବା ପାଇଁ ପୁଣି ଧନର ପାଗବାଟରେ
ନାହିଁଟି ଅଧିକାର କାହାରି ସେହିଠାରେ ।
ଚେଶିବ ଯେ ସମାଜେ ଜାଣଇ ନାହିଁ ଭ୍ରାନ୍ତି
ଧନିକ ନ କରଇ ଧନରେ ଡକାଇତି ।

ଧନର ବନ୍ଧନମୟେ ନ ହୁଏ କଣା ସବୁ
କେବଳ ପଶୁ ପହିଁ ବୋଲଏ ନାହିଁ ପ୍ରଭୁ
କେବଳ ମୂର୍ଖର ଶକତି ନାହିଁ ଭୁଜେ
ଆଗାମୀ ସମାଜର କବିତା ରଚେଁ ମୁଁ ଯେ !

କବିତା ରଚେଁ ପୁଣି ନୂତନ ଧର୍ମର
ପୁରୋଧା ହୁଏ ପହିଁ ବଂଶେ ଆପଣର
କାହାର ସେ ଧରମେ ନାହିଁଟି ତିଳେ ଦାବି
ପଡ଼ିବ ମଥା କୋଡ଼ ମରିବ ଭୟେ ଭାବି !
କହଇ ସେ ଧରମ ସହଜ କରି କଥା
ଆଲୋକ ବାୟୁ ସମ ଆଣଇ ସ୍ୱାଧୀନତା ।
ଉଚ୍ଚ ଅଟେ ଯାହା ରହିଛି ଯେ ବା ନୀଚ
କେତେ ବା ସତ ତହିଁ କେତେ ବା ତୁଚ୍ଛ ମିଛ
ସକଳ ସତ ତହିଁ ଉଠଇ ମଥା ଟେକ
ସେହି ସେ ଧର୍ମର ଗାଥା ମୁଁ ବସେଁ ଲେଖି
ମିଛରେ ଗଢ଼ା ଯାହା ପଡ଼ିବ ଯେବେ ଭାଜି
ଅଗାମୀ ସେ କାଳର କବିତା ରଚେଁ ଆଜି ।

# ନମସ୍କାର

ସ୍ୱର୍ଗତ ମାୟାଧର ମାନସିଂହ

ତୁମ୍ଭଙ୍କୁ କରୁନ ନମସ୍କାର,
ହେ ଈଶ୍ୱର ପାଦ୍ରି ଓ ପଣ୍ଡାର,
ହେ ଈଶ୍ୱର ଦେଉଳ, ଗିର୍ଜାର,
ହେ ଈଶ୍ୱର ମୌଲବି ମୁଲାର
ତୁମ୍ଭଙ୍କୁ ମରୁନ ନମସ୍କାର ।

ନମସ୍କାର କରେ ମୁହିଁ ଅସହାୟ ସେହି ନରନାରୀ
ତୁମ୍ଭର ଦୈବତ ସତ୍ୟ ଏ ଧରାରେ ହେବାକୁ ସ୍ଥାପିତ,
ଇତିହାସ-ପଥ ସବୁ ଆର୍ଦ୍ର କଲା ଯାଙ୍କ ଅଶ୍ରୁବାରି ।

ନିରୀହ, ନିର୍ଦ୍ଦୋଷ ଯାଙ୍କ ଅପୂତ ମସ୍ତକ
ଛିଣ୍ଡାଇଛି ତବ ଦୂତବୃନ୍ଦ-ତରବାରି ।

ଅଗଣିତ, ଯୋଡ଼ହସ୍ତ କାକୁତିରେ କରନ୍ତି ପ୍ରାର୍ଥନା,
ହେ ଚିର କରୁଣାମୟ ଈଶ୍ୱର ତୁମରେ,
ଏଇ ଗୃହଁକ ସଙ୍କଟେ ପିତା, ପତି ଆକୁଳ କଣ୍ଠରେ
ପତ୍ନୀ, କନ୍ୟା ବିଧର୍ଷିତ ହୋଇବାର ପାଶବ ହସ୍ତରେ,

ଦେଖି ଦେଖି ନିଜ ସମକ୍ଷରେ ।
ତୁମର କେତନ-ବାହୀ ସେହି ସେ ବର୍ବରେ

ତୁମ ନାମେ, ଉବାଦେଶ କହ୍ଵି
ପାପ, ହତ୍ୟା ଗଲେ କରି ଅକୁଣ୍ଠ ମର୍ମରେ ।
ଦେଖ ଦେଖ ସ୍ଵର୍ଗୁ ତବ ଘର୍ଘ ଏଇ ନର ଇତିହାସେ
କେତେ କୋଟି ନରନାରୀ ହ୍ରାତ, ହତ, ପଳାୟିତ ହାସେ,
କେତେ କେତେ ଉଜାଡ଼ିତ, କେତେ ଜାତି ଉଚ୍ଛନ୍ନ, ବିପନ୍ନ
ତବ ପ୍ରବୃରକଦଳ ଅତ୍ୟାଗ୍ୱରୁଁ ମାନ ଓ ଜୀବନ
ରଖିବାକୁ ପଳାୟିତ ପଛେ ରଖି ଗ୍ରାମ, ଘର, ଧନ !
ତୁମ୍ଭଲାଗି ଗୃହଚ୍ୟୁତ, ମୃତ, ଭଗ୍ନ, ନିର୍ଯ୍ୟାତିତ ସେହି ଜନତାରେ
ତୁମରେ ନ ଦେଇ, ଦିଏ ମୂଢ଼ ମୋର କ୍ଷୁଦ୍ର ନମସ୍କାର
ହେ ଇଶ୍ଵର, ଉଦାର ଘୃଣାରେ !

ଇତିହାସେ ଶ୍ରେଷ୍ଠ ବଡ଼ ତେର୍ଙ୍ଗିସ୍‌-କଳାପ,
ନରମୁଣ୍ଡ, ନରଲୁହ, ମନୁଷ୍ୟର କରୁଣ ବିଳାପ
ହେ ନନ୍ଦନ ଖାଦ୍ୟ ଯା'ଙ୍କ, ଗଡ଼ନ୍ତି ସେ ପ୍ରାର୍ଥନା ତତ୍ପର
ତୁମ ଲାଗି ଶ୍ରେଷ୍ଠପ୍ରିୟ, ହେ ରାଜାଧିରାଜ;
ସେ ମଣ୍ଡପେ ସ୍ତୁତି-ରତ ଯେତେ ସବୁ ବିଶ୍ଵସ୍ତ ତୁମର ।
ତାଙ୍କ ଖଡ଼୍‌ଗେ ନିର୍ଯ୍ୟାତିତ, ଧ୍ଵସ୍ତ, ବିଲୁଣ୍ଠିତ
କୋଟିର କ୍ରନ୍ଦନ ପ୍ରତି ଅବିଚଳ ହେ ଶ୍ରେଷ୍ଠ-ବର୍ବର,
ଶୁଣିଛ କେବଳ ସ୍ତୁତି ତୁମେ ସେହି ଆତତାୟୀଙ୍କର !
ଶ୍ଵେତାଙ୍ଗର ତୃଷ୍ଣାକ୍ଷେତ୍ରେ ଦେଖିନା କି ଘୃଣ୍ୟ ବିଭୀଷିକା ।
ମନୁଷ୍ୟ ହୋଇଲା ହହିଁ ମାଛି ପରି ବିକା ?
ମାଆଠାରୁ ଦୁଗ୍ଧପୋଷ୍ୟ ଶିଶୁ ହୁଏ ଛିନ୍ନ,
ସ୍ଵାମୀଠାରୁ ପତ୍ନୀ, ଆଉ ପୁତ୍ରଠାରୁ ପିତା ଜରାଜୀର୍ଣ୍ଣ;
ଚାବୁକର ଘାତେ ଘାତେ ଶୋଣିତ-ରଂଜିତ,

ବଳପନ୍ତ ଦଳ ଦଳ ନର ନାଗ ଅନନ୍ତଙ୍କ ଶ୍ରମେ;—
ତୁମେ କନ୍ତୁ ବର୍ବରର ଷେବେ କର ସମ୍ପଦ ଭରଣ ।

କୋଟି କୋଟି ସେଚ୍ଛ ଦୁଃସ୍ଥ ମାନବର କରୁଣ କ୍ରନ୍ଦନ
ସ୍ପର୍ଶିପାରେନାହିଁ କେବେ ତବ ଉଚ୍ଚ ସ୍ୱର୍ଣ୍ଣ ସିଂହାସନ,
କନ୍ତୁ ପାରେ ଅମାନୁଷ ଧର୍ମଧ୍ୱଜୀଙ୍କର
ଠିଆ ଏ ଯେ ଗିର୍ଜା ସାଡ଼ମ୍ବର,
ପାଦ୍ରୀ ତହିଁ ବ୍ୟାଖ୍ୟାନଇ ସ୍ୱର୍ଗସ୍ଥ ସେ ପିତାଙ୍କ କରୁଣା
ଏକଇ ନିଃଶ୍ୱାସେ ପୁଣି ସ୍ୱଦେଶରେ ସର୍ବମସ୍ତ ଘୃଣା ।
ତୁଳନା ଅଛୁ କ କାହିଁ ଏଂତ ଭଣ୍ଡତାର ?
ତୁମରେ ନ ଦେଇ ତେଣୁ ମୋର ନମସ୍କାର,
ଦିଏ ମୁଁ ଅସ୍ପୃଶ୍ୟ ସେଚ୍ଛ ନିଃଶ୍ରେୟ, ଦୁଃସ୍ଥ, ନିଷ୍ପେଷିତ
ଯେଉଁ ନର ନାରୀ ହେଲେ ମାଟିରେ ମର୍ଦ୍ଦିତ
ଢାଳି ଢାଳି ନୟନରୁ ଅସହାୟ, ଉଷ୍ଣ ଅଶ୍ରୁଧାର ।
ବାରଂବାର ଅବତରି, ଏ ଭାରତେ କରିଅଛ ଧନ୍ୟ
ତେଣୁ ଏ ଜନତା ଏଥି ଯୁଗ ଯୁଗ ଧରି
ରହିଛନ୍ତି ପରା ମୂର୍ଖ, ଦୀନ, ହୀନ, ବନ୍ୟ,
ବ୍ରହ୍ମାର ମୁଖରୁ ଜାତ ତବ ମୁଖପାତ୍ର
ସେ ବ୍ରାହ୍ମଣ ନର୍ଦ୍ଦେଶରେ ବଳପନ୍ତ ବାଳିକାର ଗାତ୍ର,
ଏଇ ଦେଖ ଶବକୁଣ୍ଡରେ ଦଗ୍ଧ ହୁଏ ଧର୍ମରକ୍ଷା ପାଇଁ
ବିକଳ କ୍ରନ୍ଦନ ମଧ୍ୟେ ବ୍ରାହ୍ମଣ ଯେ ଈଶ୍ୱରଙ୍କ ବେଦ
ନର୍ବିକାରେ ଉଚ୍ଚେ ଉଚ୍ଚାରଇ !

ତବ ସେହ୍ୱ ଧ୍ୱଜାଙ୍କର ଆଜ୍ଞା ଅନୁସରି
ବିରାଟ ଜନତା ଏଥି ଯୁଗ ଯୁଗ ଧରି
ରହିଛନ୍ତି ଅଜ୍ଞ, ଅମନୁଷ୍ୟ,
ପତିତ, ଅସ୍ପୃଶ୍ୟ !

ସବୁ ଘୋର ପ୍ରବଞ୍ଚନା, ସାଭସ୍ତ୍ର ପ୍ରଚାର,
ତୁମେଇ ମାନବ ପକ୍ଷେ ସବୁଠାରୁ ଘୋର କୁସଂସ୍କାର !
ମିଥ୍ୟାରେ ମୁଁ ଦେବି କପାଁ ଦେବତାରେ, ପାଦ୍ରୀ, ବ୍ରାହ୍ମଣରେ
ମୋ ପ୍ରାଣର ମୁଗ୍‌ଧ ନମସ୍କାର ?

ନମସ୍କାର କରେ ମୁହିଁ ଚିର ମାନବରେ,
ସହସ୍ର ବାଧାରେ ଠେଲିଉଠିଛି ଯେ କ୍ରମେ ସ୍ତରେ ସ୍ତରେ;
ଅଜ୍ଞାତ ଯେ ଯୋଦ୍ଧୃ ନରନାରୀ
ଅଶ୍ରୁ, ରକ୍ତ, ଅସ୍ଥି ଦେଇ ପୁରୁଷେ ପୁରୁଷେ
ନେଲେ ଯେହୁ ଏକେ ଏକେ ଅଶ୍ରାନ୍ତ-ସଂଗ୍ରାମେ
ଏ ପାର୍ଥିବ ଜୀବନର ଶସ୍ୟଦାନ୍ତ କାଢ଼ି ।

କହିଗଲେ ହେ ଈଶ୍ୱର, ଏ ବନ୍ୟ ପୃଥିବୀରେ
ସୁନ୍ଦର, ସୁସଭ୍ୟ, ସୁସ୍ଥ, ଅନାମୟ, ଭୋଗ୍ୟ ଧୀରେ ଧୀରେ
କରିବାରୁ ସୃଷ୍ଟି ଏହି ମଧୁର, ସୁନ୍ଦର
ଯେଉଁ ଧନ ମାନବରେ ପୁରସ୍କୃତ କର
ରୋଗ, ବ୍ୟାଧି, ଜଞ୍ଜାଳର ଅସଂଖ୍ୟ କଷଣେ,
କୃପାମୟ ହେ ଜୀବନେଶ୍ୱର !

ପୁରୋହିତ, କ୍ଷତ୍ରିୟ, ବୈଶ୍ୟର
ପ୍ରୟୋଜନ-ଜନିତ ଈଶ୍ୱର,

ହେ ଈଶ୍ୱର, ଗିର୍ଜା ଦେଉଳର,
ହେ ପ୍ରତୀକ ଅନ୍ଧ ଭଣ୍ଡାର,
ଚିର ନିଷ୍ପେଷିତ, ଚିର ଦୁଃଖୀ, ଅଭିଶପ୍ତ
ମୁହିଁ ଜଣେ ଶୂଦ୍ର ଜନତାର,
ନାହିଁ କରେ ଦୁଃଖେ ନମସ୍କାର ।



# ତୃତୀୟାକ୍ଷି

ସ୍ୱର୍ଗତ ମାୟାଧର ମାନସିଂହ

ଅସତ୍ୟରୁ ସତ୍ୟ ଟାଣିନଅ
ଆଲୋକରେ ଘନ ଅନ୍ଧକାରୁ
ମରଣରୁ ନଅ ଅମୃତରେ
କୁତ୍ସିତରେ ଯା ମଧୁର, ଗୁରୁ ।

ବ୍ୟର୍ଥ ନୁହେଁ ସୃଷ୍ଟି କଉଣସି
ତୋ ସୃଷ୍ଟିରେ, ପରମ ଜନନୀ,
ଅସତ୍ୟ ବି ମାଧୁରୀରେ ଭରା
ମରଣ ବି ଶୁଭ-ଆଗମନୀ ।

ଅସତ୍ୟକୁ ସତ୍ୟ ବୋଲି ଧରି
ଭଙ୍ଗୁରକୁ ବରୁଛ ଅକ୍ଷୟ
ତୋର ହୀନ ମୋହାନ୍ଧ ଜୀବନ
ହେଉଛି ବା ସଫଳତାମୟ ।

ଏଇ ତୋର ସୁନ୍ଦର ସଂସାର
ଏଥିପ୍ରତି ନ କର ବିରାଗୀ,
ଏଥି ଯାହା ପରମ, ପାବନ,
ସେଥିପ୍ରତି କର ଅନୁରାଗୀ ।

ଅଛ ତମେ ଅଣୁ ଅଣୁ ବ୍ୟାପି
ଓତପ୍ରୋତେ ଏଇ ପୃଥିବୀର,
ଚୈତ୍ୟାଳୟ ହେଉ ହେବ କପାଁ
ଗୃହସ୍ଥଳୀ ମହାଜନନୀରଂ ।

ତହିଁ ସ୍ୱର୍ଗ, ଜ୍ୟୋତି ଓ ଅମୃତ
ଜନନୀର ପଦଚିହ୍ନ ଯହିଁ,
ଚକ୍ଷୁଷ୍ମାନ ସେହି ସେ ପୁରୁଷ
ତବ ପଦ ଯେ ଦେଖିପାରଇ ।

ଇହ ଥାଇ ଅନ୍ୟ ଧାମେ ଗଲେ
କି ହେବ ବା ଅଧିକ ଦର୍ଶନ
ତୃଷ୍ଣାପ୍ତି ତେଣୁ ଗୋ ଜନନୀ
ତୋ ପରମ କରୁଣାବର୍ଷଣ ।

ସ୍ୱର୍ଗ ନାହିଁ ଯିବାକୁ ମୁଁ ମାଗେ,
ଘୃଣା ନାହିଁ କରେ ଏଇ ଧରା,
ଓତପ୍ରୋତ ଯେହେତୁ ଜନନୀ
ଏଇଠି ତ ଅମୃତ-ପସରା ।

ସତ୍ୟ, ଜ୍ୟୋତି, ମୁକ୍ତି, ଅମୃତତ୍ୱ
ଏଇଠାରେ ହୁଅ ଆମ କରେ,
ମାୟା ଯାହା ବୁଝୁଁ ଦୟା ବୋଲି
ମୁକ୍ତିପଥ କର ବନ୍ଧନରେ ।



# ଚାଉଳ, ଚାକର, ଚାଷ

ସ୍ୱର୍ଗତ ଗୋଦାବରୀଶ ମହାପାତ୍ର

ଚାଉଳ—

ପଢ଼ି ମନ୍ତ୍ର, ହେ ଅକ୍ଷତ ! ଦୂର୍ବାଦଳେ ତୁମକୁ ମିଶାଇ
ପ୍ରଶସ୍ତର ବେଦୀ ପରେ ପୁରୋହିତ ଆଶୀର୍ବାଦ ଦେଇ
ଯେ ଦିନୁଁ ବିଦାୟ ନେଲେ, ଏ ସଂସାର ହୋଇଲା ଦୁର୍ବହ
ଚାରିଟି ବିକଳ କଣ୍ଠୁଁ ଡାକ ଏବେ ଶୁଣେ ଅହରହ ।
ତୁମକୁ ପଖାଳରୂପେ ପାଇବାରେ ହୋଇ ଅସମର୍ଥ
ଖୋଜି ମୁଁ ବୁଲଇ ଖାଲି ଏ ଜୀବନ ଚତୁର୍ଦ୍ଦିଗେ ଅର୍ଥ ।
କି କ୍ଷତ ବିକ୍ଷତ ଆଜି, ହେ ଅକ୍ଷତ ଗୃହ ପରିବାର,
ଗୋଟି ଗୋଟି ଚାଉଳ ହେ ! ତୁମକୁ ମୋ କୋଟି ନମସ୍କାର ।
ଦୁଃଶାସନ ନାଗରିକ ତୁମକୁ କେ ରଖିଅଛି ବାନ୍ଧି
ରାଜନୀତି ପଣ୍ୟାଗାରେ, କେଉଁଠାରେ, ଖୋଜି ମରେ କାନ୍ଦି ।
କାହିଁ ଅଛ, ଦେଖାଦିଅ ଯାତ୍ରାପଥେ ପ୍ରଚୁର ରୂପରେ
ଡାକେ ମଧ୍ୟବିତ୍ତ ମୁହିଁ ବେକ ରଖି ଶାସନ-ଯୂପରେ ।

ଚାକର—

କପାଳେ ଜୁଟିଲା, ଦେଢ଼ ବରଷରେ ଦେଶଟା ବୁଲି
ମାସକୁ ସତୁରି, ଘରଭଡ଼ା ଛାଡ଼ି ଚାକରି କଲି ।
ମାସେ ଶତଥର ଡାକବାଲା ଯାଏ ଦୁଆରେ ଡାକି,
ଚାରିଟା ଚିଠିରେ ଅନୁଭବେ କା'ର ସଜଳ ଆଖି—

ଆଜି ଲୁଗା ନାହିଁ, କାଲିଠୁ କୁନିର ଖୋଲିଛି ଖାଡ଼ା,
ବସ୍ତ୍ର ନାହିଁ ବୋଲି ବଢ଼ିଛି ଲୁଚି ଖୋଜିଲା ପଡ଼ା ।
ଝଡ଼ ପବନରେ ବାଡ଼ ଘର ଛୁଟି ଯାଇଛି ଉଡ଼ି,
ବେଘର ପଡ଼ିବ ଆଖି ବୁଜିଦେଲା ମାଉସୀ ବୁଢ଼ୀ ।

ଆଗପଛ ଭାଳି ପରିବାର ଧରି ଖୋଜିଲା ଘନ;
ରହିବ ହାତରେ ଖୁଣ୍ଟିଦେଇ ଗଲା ଛମାଣ ଚାଲି ।
ସ୍ୱଦେଶ ଭିତରେ ସ୍ୱଜନମୁଠାକ ନ ହେଉ ଭୋଗ
ବିଦେଶରେ କାହାକୁ ଖୋଜିବ ? ବଲ ନାଁ ସ୍ୱଦେଶ ଆଗ ?

ସ୍ୱପ୍ନ—

ଆଖି ବୁଜିଦେଲେ ସ୍ୱଦେଶ ଭିତରେ
କି ହେବ ସ୍ୱପ୍ନର କଳି,
ସ୍ୱଦେଶ ଖୋଜି ମୁଁ ଚାଲିରେ ପଶିଲି
ତଳ ଉପରକୁ ଭାଳି ।
ବଳଦ ହଳେକୁ ବନ୍ଧକ ଖତରେ
ହିସାବ କରି ମୁଁ ଦେଖେ
ସାହୁକାର ଘର କରଜା ପାଖକେ
ଚାଲର ଆଦାୟ ପାଖେ ।
ଲୁଗା ବୋଲି ଯାକୁ ବରଣ କରିଲି
ତାକୁ ନ ପାରେ ତ ଚିହ୍ନି
କୁଣ୍ଡକୁ ଭଣ୍ଡା, କଣ୍ଠକୁ ନ ପାଏ,
ହେଲା ତା ଶେଷରେ ଲୁଙ୍ଗି ।



# ମଲାଟ

ସ୍ୱର୍ଗତ ଗୋଦାବରୀଶ ମହାପାତ୍ର

ପୁସ୍ତକ ଡାକ କହେ—ହେ ପାଠକ, ଗ୍ରାହକ ମୋର,
ଭିତର ଖୋଲ
ଲେଖକ ମୁନର କର କି ମୂଲ୍ୟ !
ପଇସା ଦେଲ !

ଶସ୍ତା ଆଜ ଏ ଛାପାଖାନା ଚଳେ ବେପାର ଗୁଲେ
ଦୋକାନ ଚଳେ;
ଭାଷା ଭୁଲେ ନାହିଁ ଛନ୍ଦ ମିଳେ,
ଭାବନା ଭୁଲେ !!
ସଭ୍ୟତା ଆଜ ମଲାଟ ଉପରେ ଗୃଳାଛି ଖାଲି
ପାଉଚ ଭୁଲି,
ରଙ୍ଗୀନ୍ ଛବି କାଗଜ ମେଳି
ଦେଖୁଛ ବୋଲି ?

ଭୂଷଣପ୍ରଧାନ ବେଶ ପରିଧାନ ସନ୍ଥଜନ
ଯାହାରେ ମଣି
ଭିତରୁ କି ତାର ବଚନ ଶୁଣି
ଉଖାରି ଗୁଣି ?

ପରିଧାନ ଚଳ ଦେହର ଚମ୍ମର ବାଘମ ଅଛି
ଓଲଟା ଗତି
ବାହାର ଦିବସ ଭିତର ରାତି
ନକଲ ଯତି !
ସଭ୍ୟତା ଆଜ ଚଳିଚ ଦେଶରେ
ପଜାଇ ବାଜ,
ମାତ୍ର, ସମ୍ମାନ ପାଉଛୁ ଭାଜ
କାଲିକ ଆଜ ।
ସ୍ୱାଦ ଚନ୍ଦର ନକଲ ବେପାର ଏମିତି ଚଳେ
ମଲାଟ ତଳେ
ଦେଖି ପାରୁଥିବ ଏ ଉଜ୍ଜଳେ
ବାହାରେ ଘରେ ।
ତେଲରେ ଓଗର ପଡ଼ିଲେ ବି ଧର
ପାଉଚି ମିଳ,
ଚିନିରେ ବାଲି,
ଦେହର ଦୁର୍ଗନ୍ଧି କ କୋଳାକୋଳି
ଲୋଭକ ଡାଳ !!
ମହାକାଳ ପଳ ବାହାର ରୁଚିର
ଭିତର ଚାର
କ ନାରଖାର,
ମଲାଟ ଉପରେ ଚଳିଛି ଖେଳ
ଏ କାରବାର ।



# କବି ପ୍ରତି

ସଚ୍ଚିଦାନନ୍ଦ ରାଉତରାୟ

ଆହେ କବି ! ବାଂରେ ହୁଅ ଠିଆ
ନେଇ ଯାଅ ତାର ମାଳା
ନୁହେଁ ଫୁଲ, ସେ ଯେ ମାତ୍ର କଥା ।
ପ୍ରାଣର ଗୋପନ ଲିପି
ମରମର ଆଦିମ ବେଦନା
ତହିଁ ମଧ୍ୟେ ଲଭେ ରୂପ
ଲଭେ ଭାଷା କରୁଣ, ମୋହନ ।

ସୃଷ୍ଟିର ଗୋପନ ଉତ୍ସ
ଜଳିବାର ଅନିବାର କ୍ଷୁଧା
ଦୀପଦାନ ସମ ଜଳି
ଢାଳିବାର ଶୁଭ୍ର ଜ୍ୟୋତି ସୁଧା
ପରକାଶ ଲଭିଅଛି ତହିଁ,
ଜୀବନର ମହୋତ୍ସବେ ମରଣର
ସ୍ୱପ୍ନ ରହି ରହି......
ଆପଣାରେ କରିଛି ଘୋଷଣା,
ମରଣରେ ସତ୍ୟ-କବି ଦେଇଯାଏ
ଆଜି ତା' ସୂଚନା ॥

କମଳାବିଳାସୀ କବି ! ଦେଖିଯାଅ
ନୁହେ ଏ ଛଳନା
ନୁହେ ଏହା ନିଶାଚର
ସ୍ୱପ୍ନମିଶା ଗତାୟୁ କଳ୍ପନା !

ସପନର ସ୍ୱାକ୍ଷୀ ତାରା ସମ ଏହା
ନିଧୁବନ ବାରେ
ତିମିର ସାଗର ତଳେ
ରଜନୀର ଶାଣିତ ଅଂଧାରେ
ଜଳିବାର ଏ ମହାତପସ୍ୟା,
ନିଜେ ସେ ଜଳନ୍ତି ଜାଳି କୋଟି ବୁକେ
ଜ୍ୱଳନ ପିପାସା !!

× × × ×

ପୋଛ କବି ପୋଛ ଅଶ୍ରୁନୀର
କ୍ରୌଂଚ ମିଥୁନର ଶୋକେ ଅଭିଭୂତ ତବ ନେତ୍ର-ନୀର ।
ମନ୍ଦିରେ ଦେଖି ଏ ସାଧନା
ବୁଣିଦେଇ ଅଗ୍ନିକଣା, ବଜ୍ରଗର୍ଭେ
ଝଡ଼ର ସୂଚନା
ନିଭିଯାଉ ନେତ୍ରକର ନଦୀ,
ଆସନ୍ନ ଝଡ଼ର ବାଣୀ ପ୍ରତି କଂଠେ
ଝରୁ ନିରବଧି ॥

ବସ୍ତ ଦାନ ତଳେ
କ୍ରୌଞ୍ଚର ଶରବିଦ୍ଧ ବନ ପକ୍ଷୀ କରୁଣ ଦୁଃଖରେ
କାଂଦିଥିଲ ବାରେ,
କାଂଦିଥିଲା ତୁମ ସାଥେ ବନଲତା,
ତରୁଦଳ ମାନେ ।
ଆଜି ଏଥି ମଣିଷର ଶିଶୁ
ପଡ଼ିଛି ଭୂଇଁରେ ଲୋଟି ଅସହାୟେ ମରଣର ବକ୍ଷୁ ।
ଶର କି ହେ ଗଲା ସରି
କବି ତବ ନୟନ ତୂଣୀରୁ ?
ବ୍ୟଥାର କରୁଣ ଲିପି,
ହଜିଗଲା ଆଜି କି ବାଣୀରୁ ?
କାଂଦ କବି ଶେଷ ଥର ପାଇଁ
ଗଗନ ପବନ ଯାଉ ସେଇ ମ୍ଲାନ
ବ୍ୟଥାରେ ମିଳାଇ
ବନେ ବନେ ଉଠୁ ହାହାକାର,
ଧରଣୀରେ ହେଉ ବନ୍ୟା,
ମାଡ଼ି ଆସୁ ଅଶ୍ରୁ ପାରାବାର,
ତଳେ ମାଟି, ଉପରେ ଆକାଶ
ଭରିଦେଉ ଅଶ୍ରୁଜଳ ତହିଁ ମଧ୍ୟେ ଯେତେ ଅବକାଶ ॥
ସେ ମହା ପ୍ଲାବନ
ସ୍ୱପନ ଖଚିତ ତବ ଅଳକାର
ପ୍ରବାଳ-ତୋରଣ
ଦେଉ ଧ୍ୱଂସ କରି
ସଂଗେ ତାର ଭାସିଯାଉ ମରି

ତୁମର କଳ୍ପନାଜାତ ଗଜଦଂତରଚିତ ମିନାର,
ମୃତ୍ତିକାରେ ବ୍ୟଂଗ କରି ବୁଣେ ଯାହା
ଘନ ଇଂଦ୍ରଜାଲ ॥

× × ×

ମହାମର ସ୍ତଂଭ
ଜଳିଯାଏ ହୁତୁ ହୁତୁ
ନୁହେ ଶେଷ, ଶେଷର ଆରଂଭ !!
ଆରେ ଆରେ ପଳାୟନପଂଥୀ !
ପଳାଇବୁ କାହିଁ ଆଜ ଛିନ୍ନକରି ଧରଣୀର ଗ୍ରଂଥୀ ?
ଲୁଚିବୁ ବା କାହିଁ
ମୃତ୍ତିକାର ଏତେ ଦାବି
ପାରିବୁ କି ଆଜ ତୁ କଟାଇ ?
କାହିଁ ଖୋଜୁ ନେବୁରେ ଆଶ୍ରୟ
ତୋର ସେଇ କୁଂଜବନ ଦେଇ କି ସେ ପାରିବ ଅଭୟ ?
ଏ ଘୂର୍ଣ୍ଣିର ସର୍ବଗ୍ରାସୀ କ୍ଷୁଧା
ତାରେ କି ଧରିବ ନାହିଁ ପ୍ରସାରି ତା
ହେତାପ୍ସିତ ଗ୍ରୀବା ?

× × ×

ପଥଭ୍ରାନ୍ତ କବି !
ଏତେ ଦିନ ସପନରେ ଲେଖିଅଛ ମାୟାମୃଗ ଛବି ।
ଏତେ ଦିନ ଗାଇଅଛ ତୁମେ
ଦ୍ରାକ୍ଷାର ପୀବର ସ୍ତନ ପୂର୍ବବାୟୁ କେଉଁପରି ଚୁମେ ।

ଦେଖିନ ଅନୂଢ଼ା ଦେହେ
ସଦ୍ଧ ସନ୍ଧ ଶୋକ, ଅନଶନ,
ମଉଳଚ ତନୁଶିଖ, ଫୁଟିନାହିଁ କପଟ ଯୌବନ ।
ମାଆର ଲୁଳିତ ସ୍ତନେ, ଶୁଷ୍କ ଚର୍ମେ
ଶିଶୁ କେତେ ବାର
ଶୋଷି ପାଇ ନାହିଁ ଷୀର,
ଝରିଅଛି ଲହୁ ଧାର ଧାର
ବନ୍ଧ୍ୟାଦେଶେ ସଂଧ୍ୟା ବାୟୁ
କାଂଦିଅଛି ଖାଲି ଆର୍ତ୍ତନାଦେ
ନପୁଂସକ ଭବିଷ୍ୟତ ବର୍ତ୍ତମାନ ପଂଗୁ ଅବସାଦେ ।
କେହ୍ନ ଯଦି କରେ ପ୍ରତିବାଦ,
ମୃତ କଂଠେ ଦିଏ ଯଦି କେହ୍ନ ଥରେ ଜୀବନର ସ୍ୱାଦ
ଦେଖିଛ କି ତେବେ ତାହା ଲାଗି
କାରାର ଶୃଂଖଳ ପୁଣି ଘାତକର ଖଡ୍‌ଗ ଉଠେ ଜାଗି
ଏଥି କେଉଁ ପର ?
ହଂସ ବକୁଳର କବି ! କି ଦେଖିଚ କହ କହ ସ୍ୱର ।
ଦେଖିନ ତ କବି,
ପଦ୍ମଭୋଜୀ ଦେଶେ ତବ ଏ ସଂବାଦ
କେବେ ପହଂଚିଛି ?
ଖାଲି ତମ ଅଭିଜାତ ମନ
ଆଜଯାକେ ଦେଖିଅଛି ଅସ୍ଥିହୀନ ମର୍ମର-ସ୍ୱପନ ।
ଅଂଗୁର କୋରକ ପରି ଲଦୋସ୍ଥିତ ଉର୍ବଶୀର ତନୁ
ଚଢ଼ିତ ନଗାଡ଼ ଭୂମେ
ସପନର ଶତ ଇଂଦ୍ରଧନୁ ।

ଝେଣ୍ଟ କେବେ ମଣିଷର ପାଇଁ
ଝୋପାଏ ଲୋତକ କେବେ ଚକ୍ଷୁଣ୍ଡୁ
ତାର ଝରି ନାଇଁ ।।

× × ×

ଯେଉଁଠି ମରଇ ଶିଶୁ,
ଜନମର ଆର୍ଦ୍ର ବୁକେ ଶୋଇ,
ଫୁଲର ଫସଲ ଯାଏ
ବୈଶାଖର କାଳଝଡ଼ ଧୋଇ,
ତୁମର ନଂଦନ କଳା,
ତୁମର ଏ ମାଧବୀ କଳ୍ପନା
କାହିଁ ମଣିଷ ସତେ
କହ କବି କରିବ ଅର୍ଚ୍ଚନା ?
ସେ ଯେ ନିଃସ୍ୱ, ସେ ଯେ ହତଭାଗା,
ଅଛି ଖାଲି କ୍ଷୁଧା, ତୃଷା, ଆଉ ଅଛି ଏତେ ଟିକେ ଜାଗା—
ଧରା ବୁକେ, ମରିବାର ପାଇଁ,
ଚରଣେ ଶୃଙ୍ଖଳ ଅଛି
ଏହା ଛଡ଼ା ଆଉ କିଛି ନାଇଁ ।
ସେ ଯେ ସର୍ବହରା !
ହରାଇଛି ସବୁ କିଛି, ବାକି ଅଛି ଶୃଂଖଳ ଓ କାରା ! !
ଆଜି ମ୍ଳାନ ଆଖିରେ ତାହାର
ଚୈତ୍ରର ସୁରଭି ଗନ୍ଧ
ହରାଇଛି ସବୁ ମାନେ ତାର—
ସବୁ ସାର୍ଥକତା,

ତେଣୁ ତାକୁ କ୍ଷମ କବି ବୁଝେ ନା ସେ
ବୋଲି ତୁମ କଥା ।।

× × ×

ଧ୍ୱଂସ କରି ସବୁ ଅତ୍ୟାଚାର
କେ ଦେବ ତା' ବୁକେ ଆଶା
ମନେ ଦବ ଦୁରଂତ ସ୍ୱପ୍ନର ?
ଧ୍ୟାନରେ କେ ଆଣିବ ସ୍ଥିରତା
ଜୀବିକାର ଯଂତ୍ର ବୁକେ ଜୀବନର ସଦ୍ୟ ପ୍ରଖରତା ?
ପସ୍ତରଇ ସକାଳ ଆଲୋକ
ଜାଗ ଜାଗ ବୃହନ୍ନଳା ! ଗଳାଯାଉ
ପଳାଉ ନିର୍ମୋକ ।।
ମଣିଷର ଯୁଗ ଆଣି କବି
'ନିରକ୍ତ କାର୍ତ୍ତିକ' ପ୍ରାତେ ସୃଜନର ଆରକ୍ତ କରବୀ
ଫୁଟିବ ଗୋ ଯେବେ
ଚିର ବସନ୍ତର ସ୍ତବ ବନେ ବନେ
ଝଂକାରିବ ସେବେ ।।
କର କବି ତେଣୁ ତୀର୍ଥସ୍ନାନ
ଏ ଶିଖାର ପୁଣ୍ୟ ତେଜେ
ହଜ ସବୁ କ୍ଲାଂତିର ନିର୍ବାଣ ।।



# ରେଂଗୁନ ଯାତ୍ରୀ

ସଚ୍ଚିଦାନଂଦ ରାଉତରାୟ

ଟାଁ ଷେଷେ ଏହ୍ୱି ଦେଖା ତ ଗଲଣି
ଇଟା ମାଟିର ଘର
ସେ ତ ଇଷ୍ଟେସନ ଘର ।

ମୁହଁ ମୁଂଡ଼ାଉଛି ପେଟରଟି ତୋର
ଛତା, ବାଡ଼୍, ଲଣ୍ଠଣ
ତୁ ଧ' ଛତା, ବାଡ଼୍, ଲଣ୍ଠଣ ।।

ହଗୁରକୁ ଚୁମ୍ବି ପକା ଶୁଆଛ
ଖୋଇଦେ ଦୁଧ କଳେ
ଆଲୋ ପଡ଼ଯିବ ଧର କୋଳେ ।

କାନକୁ ବାଂଧ ଅଂଟାରେ ଭିଡ଼
ଝୁଂଟି ପଡ଼ବୁ ତଳେ ।
ଆଲୋ, କଥା ମୋର ମାନ ଭଲେ ।।

ରଖିଛୁଟି ଆଲୋ ହଗୁରଁବୋଉ ତୁ
ଚୂଡ଼ାଖାଇ ଦଅଁ ଧଂଡ଼ା
ପୁଣି ବଡ଼ଠାକୁରଂକ ଧଂଡ଼ା ?

ପୁଷ୍ପ ମୂଲକରୁ ଅଣିଥିଲି ପତ୍ର
ମଗୁଶିର ମାସେ ନଂଡ଼ା ।
ଆଲୋ, କେତ୍ତ ସାହ୍ରୁ ପୂଅ ନଂଡ଼ା ॥

ଶୁଖିଯାଏ ପାଟି ଦେଖୁଚି ଚଡ଼ଚ
ବଚୂଆରୁ ଟିକେ ଏଡ଼ା—
ମୋର ମନଟା ନାଗୁଚ ପିଡ଼ା ।
ଅଇଲି ବେଳେ ତ କାଂଦିଲି ଖୁଡ଼ୀ
ଭୁଲି ମୁଁ ପାରବ କ ତା ?
ଆଲୋ, ମନଟା ନାଗୁଚ ପିଡ଼ା ॥

ଠିଆହୁଅ ଟିକେ ଦେଖିନଏ ଥରେ,
ଗାଁକୁ ବୁଲାଇ ଆଖି,
ସତେ ଆଉ କ ପାରବା ଦେଖି ?
ବାହୁଡ଼ ଆସିବା କଏ ସେ ଜାଣିଚ
ଠାକୁରେ ଅଛଂତ ସାକ୍ଷୀ ।
ଆଲୋ, ଆମେ ପର ନଗ୍ରମାଖି ॥

ଆଗରେ ଦିଶୁଚ ଡାକୁଅ ବଳରେ
ଘୁଞ୍ଚଏ ଉଂଚ ବାଡ଼,
ତହିଁ ମିଶାଇଚ ମୋର ହାଡ଼—
ଟିକଏ ବସିବା ଗ୍ଭଲ୍ ତା ଗ୍ଭଇରେ
ଆଉ, ଦେଖିବା ଆଶା ତୁ ଛାଡ଼ ।
ପୁଣି ଲେଉଟିବା ଆଶା ଛାଡ଼ ॥

ପାଗୁଳ କରୁଚ ଦେଖିଲୁଣି ସେଠି
ପ୍ରଧାନ ଘରର ଗାଈ,
ସଦା ବୁଲୁଅଛି ଉଦା ଖାଇ,
ଟିକଏ ଆଉ ସି ଦେଇଥାଏ ତାକୁ
କି ସୁଂଦର ଆସେ ଧାଇଁ !
ଗୁହାଁ, ରଘୁ ପଧାନଂକ ଗାଈ ।।

ଗୋଠରେ ଶୁଭୁଚ ଧୂ ଡ଼ୁକା ଶୁଣ ମ
ବଜାଏ ଗଉଡ଼ ଢୋକା
ଆରେ ଉପର ସାଙ୍ଗର ଲୋକା,
ପଥର ଖଣିଠି ଗାଉଚ କେ ଗୀତ
ନ ଅଛି ତଳେ ତା ଧୋକା ।
ଗୁଡ଼, ସେ କଥା ପଛକୁ ପକା ।।

ବାଜିଲାଣି ଘଂଟି ଦଉଡ଼େ ଇଂଜିନ
ଉଠିଲାଣି ଗୁହାଁ ଗାଡ଼ି,
ଅଟେଣ ପରି ମାଡ଼ି,
କୁଂପାନି ଘରର ରେଳ ପରି ତାହା
ଆସୁଅଛି ଧୂଆଁ ଗୁଡ଼ ।
ହଗୁର ଦେଖିଲୁଣି ରେଳଗାଡ଼ି ।।

ତାର-ବାବୁ ବସି କହୁଅଛି କସ
ଟିକଟ ବାବୁକୁ ଦେଖ,
ହଲଉଚ ଖାଲି ବେକ,

ମାଗିବ ଇଲଗେ ଲାଂଚ ନଦେଲେ
କାଟିବ ମୋ ନାମେ ଚେକ ।
ଆଜ ଟିକଟ ବାବୁକୁ ଦେଖ ॥

ଛୁଡ଼ା ହଅ ଟିକେ ଟିକଏ କଣ ମୁଁ
ଆସୁଚ ଇଲଗେ ଧାଇଁ,
ଭୁଷ୍ୱ, ଯିବୁନାହିଁ ଘଣ କାହିଁ,
ଦେବୁନ ଗ୍ଲନଆ ଆସୁଚ ସହନେ
ମଲ, ସକଉଚୁ କାହିଁପାଇଁ ?
ଆଲେ, ଗ୍ଲେପର ପଟିବ ନାଇଁ ॥

ସୁନାଟି ମୋହର ଭୁନହଅ ଭୁଷ୍ୱ
ଗଲେଟି ରେଂଗାମ ଭୁଇଁ,
ଶୁଣ, କହୁଚ ତୋ ହାହ ଛୁଇଁ ।
ଗଢ଼ାଇ ଆଣିବ ରୁପାର ପାହୁଡ଼
ଭାବନା ନ କର ଭୁଷ୍ୱ ।
କରୁଛୁଟି ପଣ ମୁଷ୍ଟି ॥

ସାହୁ ଜମିଦାର ଡର ନାଇଁ ସେଠି
ସରବେ ଚଉଦପାଆ,
ମୁଁ ଲେ ବଳେ ପିଟି ଗୁଣବାହା,
ଯାହା ଅଢ଼ଜବ ଘରର ଘରଣୀ
ତୁ ତ ରଖିବୁ ଯାଇନ୍ତା ତାହା ।
ଦେ ତୁ, ଭୁନହ ମୋ ମୁଂଡ଼ ଖାଆ ॥



# ଏ କି ଡାକ ଆଜି

ଅନନ୍ତ ପଟ୍ଟନାୟକ

ଏ କି ଡାକ ଆଜି ବାଜିଲଣି କାନେ, ସୁନ୍ଦରୀ ପ୍ରିୟ ଗୋ !
ଏ କି ମାୟା ଆଜି ଘୋଟିଲଣି ପ୍ରାଣେ ଚଞ୍ଚଳ ହିୟା ଗୋ !
ପଡ଼ିରହେ ମୋର ପ୍ରୀତିର ପାଦ, ମଦିର ଆବେଶ ଗନ୍ଧ
ଅଳସ ନୟନେ ଥରିଉଠେ ଏ କି ପ୍ରଳୟ ପାଗଳ ଛନ୍ଦ !
ଲୁଚିଯାଏ ବନ୍ଧୁଁ ନୟନ ପୁରରୁଁ ଗୋଲାପ କେତକୀ କଥା ଗୋ
ଏ କି ଡାକ ଆଜି ବାଜିଲଣି କାନେ ସୁନ୍ଦରୀ ପ୍ରିୟା ଗୋ !
ସ୍ୱର୍ଣ୍ଣ ସୁମନ ଝଲକାରେ ତୋଳୁଁ ଏ କି ନୂଆ ଛବି ସରଜେ
ସ୍ୱପ୍ନ ଯାହାକୁ ଖୋଜିବୁଲେ ମାଗି, କେସନେ ଗୋ ତାହା ବରଜେ !
ହରିତ ସବୁଜ ଶ୍ୱେତ ନୀଳ ସବୁ ନିମେଷେ ପାଲଟେ ଲୋହିତ
ଭାଳିବସେ ଯାହା କରିବ ବୋଲି ଗୋ, ପାରୁଛି କି ତିଳେ କହି ତ !

କାହିଁ ଚଳେ ମୋର ଚିତ୍ତ-ଚରଣ ଜାଣେ ନାଁ !
ଜାଣିଲିଁ ଏତକ, ନିର୍ଦ୍ଦେଶ ଆଜ ମାନେ ନା !
ଧୂସର ଫଳେ ବସିଯାଏ ଯେବେ ଆଲେଖିତ ଛବି ବିଳାସେ,
ସମ୍ମୁଖ ପଟେ ଭାସିଉଠେ ଦେଖେ

ଉଷର ଶଯ୍ୟା ରକ୍ତ ତାରକା ସହାସେ,
ନୟନରୁ ମୋର ଥୋପି ଥୋପି ପଡ଼େ ଲୋତକ
ପାସୋରିଯାଏ ମୁଁ ସହଜିଆ ପ୍ରୀତି-ଗୀତକ !

ସଜନ ! କେତେ ବା ପୂଜନାହିଁ ଚଡେ ନ ବୋଲେ,
ଯାପିନ' ଯାମିନୀ ଅଭିସାରେ ପ୍ରେମ ଉନ୍ମେଳେ ।
ଆଜ ପାଶେ ତୋର ଗୀତିଗୁଞ୍ଜନ ଶୁଭଇ
ଅଜାଣତେ ତନୁ ତନୁର ପରଶ ଲଭଇ,
ଏଇ ସ୍ୱପ୍ନବିଳାସ ଖସେ ଗୋ
ସଙ୍ଗୀତମେଳେ କିଏ ବିଦ୍ରୋହୀ ହସେ ଗୋ ?
ସମୀରଣ କହେ—"ସୁରଭି ଆଣିଲ, କେତେ ନେଲ ପାର କଣ୍ଟକ,
ସ୍ୱପ୍ନର ଶୋଭା କେତେ ଦେଲ ତୁମ ସହିତ ?"
ଶୁଣି ମୁଁ ନଶୁଣେ, ମରମରେ ବ୍ୟଥା ଲାଗଇ
ଚତୁରପଣରେ ନରମି ଯା ପ୍ରୀତି ମାଗଇ !
ଜାଣେନି ପ୍ରେୟସି, ଜାଣିଥିବ ସତେ କେଜାଣି
ପବନେ କପାଁ ବହେ ନା ପ୍ରଣୟ ଉଜାଣି !
ଗୋଲାପର ବନେ ଯିବ ବୋଲି ଯାଉ, ରକ୍ତ-କରବୀ ଡୋଳଇ
ମସୃଣ ପଥେ ଯିବ ବୋଲି ଧାଉଁ କଙ୍କର କୋଳେ ଦୋଳଇ,
ସଜନ ! କି ସବୁ ବଦଳେ ?
କାଲିର ସରଣୀ ଅନ୍ଧାର ଆସେ, ନୂଆ ପ୍ରୀତିପଥ ଉଜଳେ ।
ପୁଷ୍ପ-ପାପଳ ନଭିଲା କି ସଖି ? ବାରୁଦ ବାସନା ଆସୁଛି ?
ଅନ୍ତରତଳ କୂଜନ ନୋହେ ଲୋ କମାଣ ଶବଦେ କାଶୁଛି,
ଫୁଟିଥିଲା ଯେଉଁ ସ୍ନିଗ୍ଧ ଗୋଲାପ ସୁନ୍ଦର ଶିଶୁ ଆନନେ
ପ୍ରାନ୍ତରେ ସେ ତ ମାଂସ-ଶଇଳ ବିଗଳିତ ଶବ-କାନନେ ।
ସଖିରେ ଶଉ ଥରଇ
ଦୁଃଖ ନବଡ଼ କ୍ଷୁଦ୍ର ପୀରତି ହରଇ ।
ଚଉପାଶେ ଯେବେ ମୃତ୍ୟୁ-ଅନଳ ଜଳଚି,
କେଉଁ ବଧୂଲର ଅଧର ମଧୁ କେ କଳଚି ?

ଚଳପାଣେ ଯେବେ ତୋହପଣ ପ୍ରିୟା, ମୋହପଣ ପ୍ରିୟ ପ୍ରଣୟୀ
ଦୈତ୍ୟ କୁଳର ଶଲ୍ୟ-କୁଠାରେ ଶମଶାମ ଦେଯ ମଣଇ
ସୁରସେ ଲସ୍ୟ-ଚସ୍ୱନେ
ଵଳସିବା କହ କେସନେ ଗୋ ଆଜ ପ୍ରୀତି-ଅଳସିତ-ଅୟୂନେ ?

ସକଳେ ଗଲେ ଗୋ ଯୁଗଳ କ ଆମେ ରହିବା ?
ଧ୍ୱଂସର ତଳେ ପ୍ରୀତିର କମଳ ବୋହିବା ?
ଆମ ଲାଗି ଖାଲି ହସିବ କ ମଧୁ ରଜନୀ,
ଝଞ୍ଜନ ଖେଳେ ବାଜବ ଜୀବନ-ଖଞ୍ଜନ ?

ସଖି ଲୋ ! ଶ୍ରବଣୁଁ ଫିଙ୍ଗ ତୋ ଫୁଲ କଳିକା !
ନୁହ ତୁହି ଆଜ ପ୍ରଣୟିନୀ ପୁର ବାଳିକା;
ଖୋଲଦେ ତୋହର ସ୍ୱର୍ଣ୍ଣଭୂଷଣ ରୂପସୀ !
ସାଞ୍ଜୁରେ ଶୋହ ଶାନ୍ତିର ରଣେ ଝଲସି ।

କୋଟି ନରନାରୀ ଆର୍ତ୍ତ ପୀଡ଼ିତ ଜନତା
ଡାକେ ହାତଠାରି—"ତେଜ ଆସ ଶ୍ରେଷ୍ଠ ମମତା;"
ସଖି ! କୋଟି ଲାଗି ଆସ ଗୋ ଜଣିବା ମରଣ
ଜୀବନେ ନୁଆଇଁ ଶାନ୍ତିର ସୁଖ-ସ୍ୱପନ ।



# ସ୍ୱପ୍ନ ଦେଖୁଛ

ଅନନ୍ତ ପଟ୍ଟନାୟକ

ସେଇ ଜାତିରେ ମୁଁ ଜନ୍ମ ଲଭିଛି ପରା
ଯେ ଜାତି ଜୀବନୁ ପାସୋରି ଯାଇଛି ହସ,
ନୟନେ ଯାହାର ଅସରା ଅଶ୍ରୁ ଭରା,
ହୃଦୟ-ଶିଳାରେ ଜନ୍ତ୍ରେ ଥରୁଛି ହସ ।

କେସନେ କହୁଛ ସ୍ୱପ୍ନ କରିବ ପେଶା
ସ୍ୱପ୍ନ କାହାଣୀ ଶୂନ୍ୟେ ଝୁଲୁଛି କାହିଁ ?
ମୃତ୍ୟୁ ମାଳମା ଭଗ୍ନ ଦେହେ ମୋ ନେଶା,
ଅନ୍ନମୁଠିର ପରିଧି ମାପେ ଯେ ହାଇ ।

ମୋ ସମ ତେବେ ରେ ସ୍ୱପ୍ନ ଦେଖୁଛି କଏ ?
ଗାଉଛି କଏ ରେ ପ୍ରଳୟେ ପ୍ରଣୟ-ଗୀତି ?
ଅଳସ ବିଳାସେ ଶୋଇ ଯେ ସ୍ୱପନ ଲିହେ
ନରକ ଡାର କି ରଚଇ ସରଗ ସ୍ଥିତି ?

କୁଟୀର ଦୁଆରେ ଫୁଟେ ରେ ମୋହର ଫୁଲ,
ସହରତଳିରେ ଶୋହେ ରେ ମୋହର ଆଶା,
ବିପଣୀ ବୀଥିରେ ବଣିକ କରେ କି ମୂଲ ?
ଶିଶୁର ଦରୋଟି କୁହାଟି ଉଠେ ମୋ ଭାଷା ।

କମାରଶାଳରେ ଅନଳ ଦୋଳରେ ନିତି
ସ୍ୱପନ ମୋହର କୁସୁମ ପରଶ ଆଣେ,
ଗହଳ ହଲରେ ପରାଣଭଙ୍ଗୁଳା ପ୍ରୀତି
ଭିଜାଏ ଜୀବନ ମଧୁର ଆଲୁଅ ବଣେ ।

ସ୍ୱପ୍ନ ଦେଖୁଚି—ସହର ପଲ୍ଲୀ କୋଳେ
ଚଳିଲ୍ ମଣିଷ ମୃତ୍ୟୁବିଜୟୀ ସର;
ତରୁଣୀ ଅନାଏ ସୃଜନ ଆବେଶ ଭୋଳେ
ତରୁଣ ଅଧରେ ହାସ୍ୟ ପଡ଼ୁଛି ଝରି ।

ସ୍ୱପନ ଦେଖୁଛି—ହିଂସା ପରଶ ନାହିଁ,
ଜାଣେ ନା ଜାତି ମୋ ମାଳିକ ମୂଳିଆ କଥା,
ଦସ୍ୟୁ ବଣିକ୍ ଗଜୁତି ଯାଇଚି କାହିଁ
ସମାନ ସକଳେ, ଉଚ୍ଚ ମଣିଷ ମଥା ।

କଳିଲ କିଏ ସେ ବିଜୁଳି ଲୀଳାର ତଳେ
ବିଶ୍ୱ ଭୁବନେ ଅଜଣା ଆଲୋକ ବାଣୀ,
ଝଂକିଲ କିଏ ସେ ସାଧନା ସିଦ୍ଧି ବନେ
ପ୍ରଣବ-ରାଗିଣୀ, ପୁଲକ ପରାଣେ ମାନ ।

ସଉଧେ ସଉଧେ ବାଜିଲ୍ ମୁରଜ ବେଣୁ,
ବଜଦ ମନ୍ଦଲେ ନାଚିଲ୍ ତାହାର ସୁର,
ସମୀରେ ସମୀରେ ଉଜ୍ଜଳ ଆଶାର ରେଣୁ,
ନିତ୍ୟ ନୂତନେ ପୂରିଲ୍ ଜୀବନପୁର ।

ଏ ମର-ମଣିଷ ଅମର ହେଲ ଜ ଧୀରେ
ଆପଣା ହାତରେ ଆପଣା ଜୀବନ ରଚି,
ମୈତ୍ରୀ ମୁକୁଟ ଝଲସେ ସକଳ ଶିରେ;
ବାହୁରେ ପ୍ରଣୟ-ବଳୟ ଦେଉଛି ଝଟି ।

ସ୍ୱପନ ଦେଖୁଛି—ମୋ ଛଡ଼ୁଁ ସ୍ୱପନ କିଏ
ଉପାସ-ଶୋକରେ ଦେଖୁଛି କହ ତ ଭଲ ?
ସରଳ ଉଗାର ସେ ଜନ ପରାଣ ନଏ,
ସ୍ୱପନ ଦେଖେ କି ଜଳାଇ ଜୀବନଖଳା !



# ଆଜି ଏ ରୂପାର ଜୟନ୍ତୀରେ

ରାଧାମୋହନ ଗଡ଼ନାୟକ

( ୧ )

କ ହେବ ଆମର ତମ୍ବାର ପଟା
ଆଜ ଏ ରୂପାର ଜୟନ୍ତୀରେ ?
ସ୍ୱାଧୀନ ଏ ଦେଶେ କ ଦେଖୁଛୁ ଆମେ
ସିନ୍ଧୁ ଗଙ୍ଗା କାବେରୀ ତୀରେ ?

କାରାଗାରରୁ ମୁକ୍ତ ହେବାକୁ
ଆମେ ଟାଳିଥିଲୁ ଲୁହାର କାରା,
ଗୁଳିରେ, ଗୋଳାରେ ଫାଶୀଖୁଣ୍ଟରେ
ଆମେ ଢାଳିଥିଲୁ ଲହୁର ଧାରା ।

ଆମେ ଜାଳିଥିଲୁ ମହାବିପ୍ଳବ—
ମହାମୃତ୍ୟୁର ଅଗ୍ନିଶିଖା,
ଆମେ ଭଗତ ସିଂ, ଉଦ୍ଧାମ ସିଂ
ଆମେ ଲଇଖଣ, ବାଜିଆ, ବକା ।

ଆମେ ବାଘା ଯତି, ଆମେ ଗଣପତି
ଆମେ ସେ କନକ, ମାତଙ୍ଗିନୀ,
ଆମେ ତୋଳିଥିଲୁ ଜୈତ୍ର ପତାକା
ହିଂସା-ରଣର ମରଣ ଜିଣି ।

ଆମେ ଯେଉଁମାନେ ଯୁଦ୍ଧର ସେନା
ରହିଯାଇଅଛୁ ଯୁଦ୍ଧ ଶେଷେ,
ବଞ୍ଚିତ ହୋଇ ବଞ୍ଚୁଛୁ ଯିନା
ଲୁଣ୍ଠିତ ଆମ ସ୍ୱାଧୀନ ଦେଶେ ।

କଳାଗଣ୍ଡିର ଅନ୍ଧାର କାଟି
ଆମେ ଯେଉଁମାନେ
ଆଣିଥିଲୁ ଦିନେ
ମୁକ୍ତିର ଲାଲ ସୂର୍ଯ୍ୟ,
ଦେଶର ସୁଦିନେ
ଘୋର ଦୁର୍ଦ୍ଦିନେ
ଆମେ ସେଇମାନେ ଉଦ୍ବ୍ୟ ।

କି ହେବ ଆମର ତମ୍ବାର ପଟା
ଆଜ ଏ ରୁପାର ଜୟନ୍ତୀରେ ?
ସ୍ୱାଧୀନ ଏ ଦେଶେ କି ଦେଖୁଚୁ ଆମେ
ସିନ୍ଧୁ, ଗଙ୍ଗା, କାବେରୀ ତୀରେ ?

( ୨ )

ସୁନାର ସପନେ ଦେଖିଥିଲୁ ଆମେ
ଗଣ-ଶାସନର ସୁଷମ ଶିଖା,
ସମତାକୁ ତା'ର ମମତାକୁ ତା'ର
କ୍ଷମତା-ଦର୍ପ ଦେଇଛି ଗିଳି ।

ମୁକ୍ତି-ଯାଗରେ ଆମର ଆଗରେ
ତ୍ୟାଗରେ ଯେ ଥିଲେ ଆମର ନେତା,
ଶାସନରେ ବସି, ଆସନରେ ବସି
ଭୋଗରେ ସେ ଆଜ ଭ୍ରଷ୍ଟଚେତା ।

ଶକ୍ତିମଦରେ ମନ୍ତ୍ରୀପଦରେ
ଥାଉ ହେବାପାଇଁ ସକଳ ମନ,
ବସ୍ମିତ ହୋଇ ଦେଖୁଅଛୁ ଆମେ
ଶାସନଟା ଖାଲି ନବାତନ ।

କି ହେବ ଆମର ତମ୍ବାର ପଟା
ଆଜ ଏ ରୁପାର ଜୟନ୍ତୀରେ ?
ସ୍ୱାଧୀନ ଏ ଦେଶେ କି ଦେଖୁଚୁ ଆମେ
ସିନ୍ଧୁ, ଗଙ୍ଗା, କାବେରୀ ତୀରେ ।

( ୩ )

ଦେଶରେ ଶାସନ ଚଳାଉଛି କିଏ ?
ଗଣତନ୍ତ୍ରର ଶାସକ ଆଜ ?
ଭଲକରି ଟିକେ ଅନାଇ ଦେଖିଲେ
ଆତ୍ମା ଆମର ନୁହଇ ରାଜ ।

ଦୃଷ୍ଟି ଆଗରେ କିଏ ଦିଶୁଅଛି ?
ଆକାଶ ଚିରୁଛି କାହାର କୋଠା ?
ମୁହୁର୍ମୁହୁଃ କାର୍ ଗାଡ଼ି ଚକତଳେ
ଚକଟି ହେଉଛି ରାଇଜ ଗୋଟା ?

ଧର୍ମକୁ ପୁଣି ଆଖି ଠାରୁଅଛୁ
କାହାର ଭୁଙ୍ଗ ଧର୍ମଶାଳା,
ଶାସନର ପ୍ରଭୁ ହେଉଛୁ କାହାର
କେନ୍ଦୁପ୍ରସ କର୍ପୂରମାଳା ?

ମଦ, ହେକ, ନୋଟ୍ ବଣ୍ଟନ କରି
କିଏ ଭୁଲାଉଛି ଦୁଃସ୍ଥମନ ?
ଇନ୍ଦ୍ରଜାଲର ମାୟା ମେଲିଦେଇ
କିଏ ଜିତାଉଛି ନିର୍ବାଚନ ?

କଳର ମାଲିକ, ସେଠ, ଠିକାଦାର,
କଳାବଜାରର ସାଧୁବଦନ,
ଗଣତନ୍ତ୍ରର ସବୁ କ୍ଷେତ୍ରରେ
ସେଇମାନେ ଆଜି ସୂତ୍ରଧର ।

ସେଇମାନେ ଦାମୀ,
ସେଇମାନେ ନାମୀ,
ସେଇମାନେ ଆଜି ଶ୍ରଦ୍ଧାକର ।

କି ହେବ ଆମର ତମ୍ବାର ପଟା
ଆଜି ଏ ରୁପାର ଜୟନ୍ତୀରେ ?
ସ୍ୱାଧୀନ ଏ ଦେଶେ କି ଦେଖାଉଁ ଆମେ
ସିନ୍ଧୁ, ଗଙ୍ଗା, କାବେରୀ ତୀରେ ?

( ୪ )

ଗାଆଁର ଗାଆଁର ଉନ୍ନତି ଆଶେ
ପଞ୍ଚାୟତର ସଂସ୍ଥା ଗଢ଼ା,
କଅଣ ହେଉଛି ତାହାର ଭିତରେ
କଏ ସେ ଦେଖୁନ ଜାଣୁନ ଭଲ ?

ନିର୍ବାଚନର ଆସ୍ଥାନ ହୋଇ
ଗାଆଁର ଲକ୍ଷ୍ୟ ଭ୍ରଷ୍ଟ କରି,
ଗାଆଁରେ ଗାଆଁରେ ଘରେ ଘରେ ନିତି
ଭେଦ, ବାଦ, ଦ୍ୱନ୍ଦ୍ୱ ଦେଉଛି ଭରି ।

ବନ୍ୟା ନାଆଁରେ ବନ୍ଧ ନାଆଁରେ
କେତେ କି ନାଆଁରେ ଅର୍ଥ ଆସେ;
ଆହୁତି ପଡ଼ଏ ବେଶି ଭାଗ ଯାଏ
ଶଠ, ଠାଉଠର—ଅଗ୍ନି ଗ୍ରାସେ ।

ପଙ୍ଗପାଳର ଅତ୍ୟାଚାରରେ
ସୁନାର ଫସଲ ହେଉଛି ଶେଷ,
ଅକାଳେ ମରୁଛି କୃଷୀ ମଜଦୁର
ଦଗ୍ଧ ହେଉଛି ଆମ ଏ ଦେଶ ।

କି ହେବ ଆମର ଚମ୍ପାର ପଠା
ଆଜି ଏ ରୁପାର ଜୟନ୍ତୀରେ ?
ସ୍ୱାଧୀନ ଏ ଦେଶେ କି ଦେଖୁଚୁ ଆମେ
ସିନ୍ଧୁ, ଗଙ୍ଗା, କାବେରୀ ସ୍ରୋତରେ ?

( ୫ )

ଚମ୍ପାପଣ୍ଡାକୁ ହାତ ବଢ଼ାଉଚ
ଅର୍ଜି ଦେଇଚୁ ଘଣ୍ଟିଆ ପାଇଁ,
କାଙ୍ଗାଳ କରି
କଙ୍କାଳ କରି
ଆମକୁ ରଖିଚ
ଆମର ଲଜ୍ଜା, ବସ୍ତ୍ରର କାନ୍ଧିଁ ?

ହାତ ବଢ଼ାଇଲା ବେଳକୁ ତଥାପି
ପଛକୁ ଘୁଞ୍ଚି ଅସୁବି ମନ,
କି ହେବ ଆମର ସ୍ମୃତି ସମ୍ପଦ
କି ହେବ ତୁମରି ଦାନର ଧନ ?

କି ହେବ ଆମର ଚମ୍ପାର ପଣ୍ଡା,
ଆଜି ଏ ରୁପାର ଜୟନ୍ତୀରେ,
ସ୍ୱାଧୀନ ଏ ଦେଶେ କି ଦେଖୁଚୁ ଆମେ,
ସିନ୍ଧୁ, ଗଙ୍ଗା, କାବେରୀ ତୀରେ ?



# ଅୟି ପୃଥ୍ୱୀ

· ରାଧାମୋହନ ଗଡ଼ନାୟକ

ଅୟି-ପୃଥ୍ୱୀ, ଆଉ ଥରେ କାମଧେନୁ ହୁଅ ଆଜ ତୁମେ,
ବୁଭୁକ୍ଷାର ଦହନେ କ ହରାଇବୁ ପ୍ରାଣୀ
ଆମେ ସବୁ ମନୁର ସନ୍ତାନ,
ତୁମର ଏ ସ୍ନେହାଶ୍ରିତ ଭୂମେ ?
ଅୟି ପୃଥ୍ୱୀ,
ଆଉ ଥରେ କାମଧେନୁ ହୁଅ ଆଜ ତୁମେ ।

ସସ୍ୟହୀନ ହେଲ କ୍ଷେତ, ପର୍ଣ୍ଣହୀନ ହେଲ ମହୀରୁହ,
ଅନ୍ନହୀନ ହେଲ ଯେବେ ଗୃହ
ଆକୁଳ ପ୍ରକୃତି-ବର୍ଗ ଦେଖି ତହିଁ ଦୁରନ୍ତ ଦୁର୍ଭିକ୍ଷ
ଆର୍ତ୍ତ କଳ-କୋଳାହଳେ ଭରିଦେଲେ
ପଥ ଘାଟ ପାଣ୍ଡୁ ଅନ୍ତରୀକ୍ଷ ।

ଅୟି ପୃଥ୍ୱୀ,
ତୁମେ ତେବେ ଠିଆହେଲ ଧରି ଏକ କାମଧେନୁ ମୂର୍ତ୍ତି;
ଶୁଣାଇଲ ସ୍ନେହସିକ୍ତ ଆଶ୍ୱାସ-ବଚନ,
'ହେ ସ୍ୱଜନ,
କର ମୋତେ କର ହେ ଦୋହନ ।'

ମନୁ ହେଲେ ବତ୍ସଚଣ, ଦୋହ୍‌ଧା ହେଲେ ପୃଥ୍ୱୀ,
ସ୍ରବିଲ ଦୁଗ୍‌ଧର ଧାର
ଶସ୍ୟର ସମ୍ଭାର
କମ୍ର ଶିଖ ଯେନ ପୁଣି ଉଦ୍ଭାସିଲ ଚବର୍ଣ୍ଣ ସଂସାର ।
ମଞ୍ଜୁଳ ଉଠିଲ ପୁଣି ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟର ଋଜୁ,
ଘରେ ଘରେ ଦ୍ୱାରେ ଦ୍ୱାରେ ଉଠିଲ ଉଚ୍ଛଳ
ଘୃତ ଅନ୍ନ ଦଧି ଦୁଗ୍‌ଧ ପାନ
ସନ୍ତୋଷର, ତୃପ୍ତିର ମାଧୁରୀ ।

ସେ କେଉଁ ଯୁଗର କଥା
ଏ ଯୁଗ ତ ସମ୍ପୂର୍ଣ୍ଣ ପୃଥକ,
ଏକକର ରାଜ୍ୟ ନାହିଁ,
ପଥେ ପଥେ ବାଜୁଅଛି ଜନ ଜୟ ଢଙ୍କ
ପ୍ରକୃତିର ଗ୍ରୀବ ପରେ ବିଜ୍ଞାନର ଉଗ୍ର ଅଭିମାନ
ବିଜୟର ଧ୍ୱଜା ତୋଳି ମେଲିଅଛି
ମତ୍ତ ଅଭିଯାନ ।

ମନୁର ସନ୍ତାନ ଏଇ ଆଜର ଦାୟାଦ,
ଯୁକ୍ତକରେ ମାଗୁନାହିଁ ସ୍ୱର୍ଗ ଆଶୀର୍ବାଦ,
ମାଗୁନାହିଁ ଚନ୍ଦ୍ର-ଜ୍ୟୋତ୍ସ୍ନା ।
ମାଗୁନାହିଁ ଇନ୍ଦ୍ର-ମେଘ-ବାରି,
ମୁକ୍ତ ସମୀରଣ ପଦେ
ଆବେଦନ ଦେଉନାହିଁ ଡାଳି ।
ଜୟଯାତ୍ରା କରୁଚି ସେ ଦୂର ଚନ୍ଦ୍ରବାଳେ
ସ୍ପୁଟ୍‌ନିକ ପଠାଉଛି ଦିଗ୍‌ବିଦିକ୍

ଦୂର ଅନ୍ତରାଳେ
ନୂଆ ଉପନିବେଶରେ ଆବିଷ୍କାର ଆଶେ ।
ଅନନ୍ତ ଉଲ୍ଲାସେ ।

ବିଦ୍ୟୁତ୍‌-ଆଲୋକ-ଶିଖା ଜାଳୁଛୁ ବହୁତ
ତଥାପି କାହିଁକି ପୁଣି
ଅନ୍ଧକାର ଏତେ ଘନୀଭୂତ ?
ଦଗେ ଦଗେ ପଠାଉଚି ଶାନ୍ତିର କପୋତ,
ଉଦ୍‌ବେଳି ଉଠୁଚି କିଆଁ
ପଥେ ପଥେ ଅଶାନ୍ତିର ଖର ଅଗ୍ନିସ୍ରୋତ !
କାହିଁକି ବଢ଼ୁଚି ତେବେ
ଅଭାବର ଦୈନ୍ୟର ବିପାକ ?
ଘରେ ଘରେ ପ୍ରାଣେ ପ୍ରାଣେ
ଉଠୁଅଛି ହା' ଅନ୍ନର ଡାକ
ସୁବିପୁଳ ବିଜୟୀର ଦୃପ୍ତ ଉନ୍ମାଦନା
ମର୍ମେ ମର୍ମେ ତୋଳୁଅଛି ନିରୁକ୍ତ ବେଦନା ।

ଅୟି ପୃଥ୍ୱୀ, ଆଉ ଥରେ କାମଧେନୁ ହୁଅ ଆଜି ତୁମେ,
ବୁଭୁକ୍ଷାର ଦହନେ କି ଦହିବୁ ପ୍ରାଣ
ଆମେ ସବୁ ମନୁର ସନ୍ତାନ,
ତୁମର ଏ ସ୍ନେହାଞ୍ଚିତ ଭୂମେ ?
ଅୟି ପୃଥ୍ୱୀ,
ଆଉ ଥରେ କାମଧେନୁ ହୁଅ ଆଜି ତୁମେ ।



# ଯନ୍ତ୍ରନଗର

କୁଞ୍ଜବିହାରୀ ଦାଶ

ନୁହେଁ ଏ ତ କୋଣାର୍କ ବା ତାଜ୍
ନୁହେଁ ଏ ତ କୃଷକ କୁଟୀର
ନୁହେଁ ଏ ତ କ୍ଳାନ୍ତ ପରିଜନ ବସୁଧା ମାଟିରେ;
ନୁହେଁ ଏ ତ ଈପ୍ସିତ ଗୌରବ
ଆଗାମୀ ସପନ
ବର୍ବର ଯୁଗର ଏକ କୁତ୍ସିତ କାହାଣୀ
ଜମାଟ ସହସ୍ର ଅଶ୍ରୁକଣା
ଛୁଡ଼ା ଏଥି ହୋଇଛି କପାଇଁ ?
ଷମତାର ଶେଷ ଅସ୍ତରାଗ ନଡ଼ାଇଦେବାକୁ କେହି ନାହିଁ ?
ଅନ୍ଧକାର ଯୁଗର ନିଶାଣ ଉଡ଼ାଇଦେବାକୁ ନାହିଁ ବଳ ?
ଶୁଣିଛୁ ତ ଏଇ ପଥେ ଧାଇଁଥିଲ୍ ଝଡ଼
ଗାଇ ଅଗ୍ନିଗାନ
ନରମୁଣ୍ଡମାଳା ପିନ୍ଧି ଛୁଡ଼ା କପାଁ ଏଇ କାପାଳିକ
ଅଧିକ ଦେବାକୁ ଅପମାନ
ଜାଗ୍ରତ ଏ ଶତାବ୍ଦୀରେ ?
ଭାଙ୍ଗି ନାହିଁ ପେଷିତର ଉତପ୍ତ ନିଃଶ୍ୱାସେ
ଭାସି ଏ ଯାଇନ ଆଖି ନୀରେ ?

କଙ୍କାଳକୁ କଙ୍କରେ ମିଶାଇ
ପଙ୍କ କରି ଲିପିଛୁ ପ୍ରାସାଦେ
ସ୍ୱେଦକୁ କରିଛୁ ଅଶ୍ରୁ
ଅଶ୍ରୁକୁ କରିଛୁ ରକ୍ତଧାର
ସୁଖଶାନ୍ତି ମଣ୍ଡପରେ ଗଡାଇ ଦେଇଛୁ ହାହାକାର ।
ଅନ୍ଧରାଜ ଅନ୍ଧକାରେ ଢାଳିଛୁ ଆଶିଷ
ଅଶ୍ରୁ ଆଜି ବିଷ ।
ଯନ୍ତ୍ରଣାରେ କରିବା ଚିତ୍କାର
ନାହିଁ ଅଧିକାର ।

ହରିଛୁ ଯେ ସହସ୍ର ଇଜ୍ଜତ, ସୃଜିଛୁ ଉତ୍ପାତ
ରେ ତୋଫାନ, ପାଷାଣେ ପାଷାଣେ
ଦେଖି ହସେ ସେ ଇସ୍ପାତ ହାତ ।
ଜଳିଉଠେ ସେଇ ରକ୍ତ ଆଖି କଳାର ମହଲେ
ବନ୍ଧୁକର ଗୁଳି ସମ ନେସ ବୁଲୁଛନ୍ତି ଦନ
ବୁଲେ ଏ ଜଙ୍ଗଲେ ।

କଣ୍ଠ ତାର ଗର୍ଜିଉଠେ ଏବେ ନକାଞ୍ଚନ—
ରହ ରହ ପାଜି
"ବେଠି ନ ଦେବାର ମଜା ଛଡ଼ାଇ ଦେଉଛୁ ମୁହିଁ ଆଜି
"କେ ଅଛରେ ଆଣ ଲସନ୍ଧରେ ମାଡ଼ିଯାଅ କଣ୍ଠା
"ଶୁଣି ଏ ଲଠିର ଡାକ ଦେଇନାହିଁ ଭେଟି
"ବୁଢ଼ୀମାଡ଼େ ଘର୍ଙ୍ଗିଦିଅ ଅଣ୍ଟା ।"
"ଘୁମୁଙ୍କ ସାମନାରେ ଇଏ ଗଲ୍ ଛଟା ଟାଣି
"ଗୋଟି ଗୋଟି ଓପାଡ଼ ତା ଦାଢ଼ି;"

"ଗ୍ରାମୁଙ୍କ ବନ୍ଧୁଙ୍କେ ଇଏ ହେଉଥିଲା କଥା
"ମଣ୍ଡାଇଦିଅରେ ତାକୁ ଗାଡ଼ି ।"
ଖଜଣା ଦେବାକୁ ଏଇ କରୁଥିଲା ମନା
ପଂଡ଼ାଣୀକ ତାର
"ବାଘ ଆଗେ ଫିଙ୍ଗିଦିଅ
"ନନ୍ତୁବା କାନ୍ଧରେ ରଖି, ଦିଅ ମଲପ୍ରବ ।"
ମାଗଣା ଦେଉନ ଇଏ
"ଲଗାଅ ଗୋଇଠା ବଧା ବଜାଅ ନାଗବ ।"

ପିଶାଚର ସହସ୍ର ଆଦେଶ
ମୂର୍ତ୍ତିମାନ ପତନନଗର
ପ୍ରଳୟ କମାଣ ସମ ବକ୍ଷେ ଲକ୍ଷ୍ୟ ରଖିଛି ତୋହର
ମତ୍ତ ହାଣ୍ଡି ସମ ନିର୍ବିକାରେ
ମନ୍ଥି ଏ ଦେଇଛି ଲକ୍ଷ ଗୁଡ
ଏ ଏକ କଙ୍କାଳ ସ୍ତୂପ
ଗଦାଇ ଦେଇଛି ଝୁଣ୍ଡ ଗୁଡ ।
ଏ ଏକ ଆଗ୍ନେୟଗିରି ତୋଳିଅଛି ଶିର
ଏ ଏକ ପାଷାଣ ହାତ
ମଣିଷ ଧମନୀ ଶିରା ଶୂନ୍ୟ କରି
ଦୁହିଁଛି ରୁଧିର ।

ଇଏ ଏକ ଯାଦୁଘର
ତୋଳିଅଛି ଭୂକମ୍ପର ନାଚ
ଯମପୁରେ ଯିବାଲଗି ଯମଦୂତ ଗଢ଼ିଛି ପାହାଚ ।

ରଣଭୂମି ବିନାଶ ଲୀଳାରେ
ନାଚ ନାଚ ସ୍ତବ୍ଧ ଏବେ ହୋଇଛି କବନ୍ଧ
ବାନ୍ଧିବାକୁ ସ୍ୱାଧୀନ ପ୍ରବାହ
ଆଗ୍ନେୟର ଶସ୍ତ୍ର ଜଣେ ପାତିଅଛି ଛନ୍ଦ ।

ମରିବା ଆଗରୁ ନିଜେ ନିଜର ସମାଧି
ଯାଇଅଛି ଗଢ଼ି
ଲକ୍ଷ ପ୍ରାଣ ଜାଳି ଜାଳି
ନିଜେ ସେ ଯାଇଛି ଶେଷେ ପୋଡ଼ି ।

ଦୁନିଆକୁ ଦେଇଛି ସେ ମୁଠିଏ ପାଉଁଶ
ଏଇ ତାର ଦାନ
ତାହା ପରେ ଉତ୍ଥହୋଇ ନିଷ୍ପେଷିତ ଆଁରେ
ଗାଅ ଏ ଯୁଗର ଜୟଗାନ ।
ଗତ ଶତାବ୍ଦୀର ଅଭିଶାପ
ଏବେ ଯେବେ ଚୁମ୍ବଇ ଆକାଶ
ଶତ ଶତ ପତନନଗର
ତଳଦେଶେ ଗର୍ବେ ତୋଳେ ମଥା
ଲକ୍ଷକୋଟି ଫିଙ୍ଗି ଦେଇ ପାତାଳ ଗହ୍ୱରେ,
କହ କେବେରେ କଙ୍କାଳ ହେବ ତା ନିକାଶ ?



# ନମସ୍କାର କର

ମନମୋହନ ମିଶ୍ର

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ବର୍ବରକ
ମୋର ଏ କବିତା
ସଂସାରରେ କବି ବୋଲି, ବୋଲନ୍ତି ଯାହାକୁ
ସେ କବି ମୁଁ ନୁହେଁ
ମୋହର କଳ୍ପନା ସୀତା
ଜନ୍ମ ଥିଲା ଏ ମାଟିର କଠୋର ଜଠରୁ
ଦୁରନ୍ତ ଜୀବନ-ପଥେ ଘନ ବନାନ୍ତରେ
ବୃକ୍ଷପୁଷ୍ପ ଶ୍ୟାମ କୋଳାହଳେ
ଜଟାଧାରୀ ବନବାସୀ ସନ୍ନ୍ୟାସୀର ପାଣି
ବରିଥିଲା ଆପେ ଜାଣି ଜାଣି ।
ସତ୍ୟ ଆଜ ପ୍ରେମ ଲାଗି ବାର ବାର
ଦେଇଥିଲା ଅନଳ ଶପଥ;
ଅଜଠାରୁ ବର୍ଷ ଏକଶତ,
ଯେଦିନ ନଥିଲା ନେତା, ନଥିଲା ଗୁଣୀ
ସେଦିନ ମୁଁ ତା'ରେ ଜନ୍ମ ଦେଲି
ଶତ ଶତ ମାତାର କ୍ରନ୍ଦନେ,
ହିମାଳୟ ଶିଖର ବଦ୍ୟାର ତାରେ ବୁହାଇଲି ।

ଲକ୍ଷ୍ମୀବାଈ ଅସିର ଝଲସେ
ଗଢ଼ିଥିଲା ତାହାର ଲପନ
ସଜଫୁଟା କେତେ ମାଳକ
ହୃଦସ୍ପୁର ଉତ୍ତପ୍ତ ଶର
ଗଢ଼ିଥିଲା ତାର କଟିବାସ,
ଅପ୍ରୁତ କୃଷିବଳର ପେଶୀଳ ଧମନୀ
ଗୁନ୍ଥିଥିଲା ବେଣୀ—
ଗଢ଼ିଥିଲା ବନ୍ଧନ ଦଉଡ଼ି
ସେ ଦଉଡ଼ି କରିଲା ମସୃଣ
ପ୍ରଥମ ପ୍ରେମିକା ମୁଖ ମଧୁର ସିଞ୍ଚନେ ।
ଆଜ ମୋତେ ଶୁଝିବାକୁ ହେବ
ଯାହାଠାରୁ ଯାହା ନେଇଥିଲା ।
ଶହେ ବର୍ଷ ତଳର ଏ ଋଣ
ବଢ଼ି ବଢ଼ି ହେଲା ସେ ଦୁର୍ବଳ !
ଭାଙ୍ଗିବାକୁ ହେବ ମୋତେ
ଅଶୋକବନର ଭୀମ ରାକ୍ଷସ ପ୍ରାଚୀର;
ଯୋଡ଼ିବାକୁ ହେବ
ମୁଗ୍ଧ ପ୍ରଣୟୀ ବୁକେ
ପ୍ରେମିକାର ମୁଦ୍ରିତ ନୟନ
ଗଢ଼ିବାକୁ ହେବ ମୋତେ ଅର୍ବୁଦ ଧମନୀ ।
କୋଟି କୋଟି ବାହୁ
ଚରାଚରେ ମାନବ ସ୍ୱାକ୍ଷର
ଜୀବନର ଦୃଢ଼ ଇସ୍ତାହାର
ମୋତେ ଆଜ ଲେଖିବାକୁ ହେବ ।

ମୋତେ ଆଜ ଲେଖିବାକୁ ହେବ
ଉଠିମ୍ନ୍ ତରଙ୍ଗେ
ଭ୍ରୂଭଙ୍ଗୀରେ ସୁସଂଯତ
ଲଜ୍ଜାର ଲାଞ୍ଛନା
ମ୍ଲାନ-ଦଗ୍‌ଧ ବନ୍ଧୁର ହୃଦୟ
ସମତଳ ବୁଣିବାକୁ ହେବ ଆଲୋକ ସ୍ପନ୍ଦନ ।

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ଷଗୃରକ,
ତୁମେ ହୁଅ କର୍କଶୁଁ କର୍କଶ
ରୂଢ଼ରୁ ରୂଢ଼ତର
ପୁରୁଣା ବନ୍ଦୋବସ୍ତର ଜସବ ଫୋପାଡ଼
ଅମୃତସମ୍ଭବା ମୋର ମାଟିର ଦୁଲଳୀ
ମୋ କଳ୍ପନା ସୀତା
ଜନମର ଶାଢାଙ୍କିତ ଯନ୍ତ୍ରଣା ସକଳ
(ବାରେ ଆଜ ଦେଲି ପୁରସ୍କାର)
ନମସ୍କାର କର
ଆହେ ଷଗୃରକ,
ତୁମକୁ ମୋର ଏ ଆଜ୍ଞା
ନମସ୍କାର କର ।



# ମୁଁ

କୃଷ୍ଣଚନ୍ଦ୍ର ତ୍ରିପାଠୀ

ମୋର ଜୀବନ ନୁହଇ ଆଜର ଗୋ ପାଣି-ଫୋଟକା
ମୁଁ ତ ଅସୀମ କାଳର କପାଳେ ଯିବନି ଲିଭି ଗୋ,
ମୁହିଁ ଏତେ କାହିଁପାଇଁ ହେବ ଅତରଛ ଚାଟକା
ମୁଁ ଗୋ ମୋହର କାମନି ହସି ହସି କରୁଥିବ ଗୋ ।
ମୁଁ ଗୋ ଚିର ସନାତନ ଶାଶ୍ୱତ ଅବିନାଶୀ ଗୋ
ମୋର ଜୀବନ ଗୋ ଖାଲି ଜୀବନ, ଜୀବନ, ଜୀବନ;
ମୁଁ ଗୋ ମହାବିଶ୍ୱର ଆଲୋକେ ଉଠେ ବିଭାସି ଗୋ
ମୁଁ ଗୋ ମହାବିଶ୍ୱରେ ମୁକ୍ତ ମଧୁର ପାବନ ।
ମୋର ଚଉଦିଗେ ଖାଲି ଅମୃତ ଝର ଝରଇ
ମୁଁ ଗୋ କ୍ଷୁଦ୍ର ନୁହଇ ବିରାଟ, ଉଦାର, ମହାନ,
କୋଟି ଅମୃତ ଆଶା ବୁକୁତଳେ ମୋର ଭରଇ
ମୁଁ ଗୋ ଆନନ୍ଦ-ଜଳେ କରୁଥିବ ନିତି ସ୍ନାହାନ ।
ମୋର ଦୁଃଖ ବେଦନା ପୁଲକ ଗୋ ସବୁ ସମାନ
ମୁଁ ଗୋ ସବୁରେ ଦେଖିବ ଜୀବନ ମୋହନ ବିଳାସ,
ମୁଁ ଗୋ ମୋହର ଭିତରେ ଦେଖିବ ବିଶ୍ୱ ବିତାନ
ମୋର ନାହିଁ ନାହିଁ ନାହିଁ ଦାରୁଣ ଦୁଃଖ ପରସ ।
ମୁଁ ଗୋ ସତ୍ୟ, ଚିର ସୁନ୍ଦର, ଶିବ, ଶୁଦ୍ଧ,
ମୁଁ ଗୋ ସକଳର ଲାଗି ଜାଗିଛି ଏ ମହା ଭୁବନେ,
ମୁଁ ଗୋ ସବୁରି ଭିତରେ ହୋଇଉଠେ ଉଦ୍‌ବୁଦ୍ଧ
ମୁଁ ଗୋ କଲ୍ଲୋଳ ଉଠେ ବିଶ୍ୱ ଆକାଶ ପବନେ ।



# ଏ ପୃଥିବୀ

ବିନୋଦଚନ୍ଦ୍ର ନାୟକ

ଫିଙ୍ଗି ଦୂରେ ମାଟିର ନିର୍ମୋକ
ପ୍ରଜାପତି ସ୍ୱପ୍ନ ନେଇ, ଏକଦା ମୁଁ ବିସ୍ତାରିଲି ଡେଣା
ଅନନ୍ତ ନୀଳ ଉତ୍ସୁକ
ନେଇ ଭୁଲିଗଲି ଆହା ଜୀବନସଂଗ୍ରାମେ, ମୁଁ ବି ଏକ ସେନା ।

ନଦୀ ବଂଶଗୁଚ୍ଛା ଗୃହ ଶୃଙ୍ଗାରବନ୍ତର
ଏ ଧରଣୀ ସୁଜଳା, ସୁଫଳା
ସ୍ତିମିତ ଚନ୍ଦ୍ରର ସମ ଅସ୍ତତଟେ
ଅପସରିଗଲ୍ ।
ଭାବିଲି ମୁଁ ଫିଙ୍ଗିଦେଲି ବିଷର ପିଆଲ୍,
ଉନ୍ମତ୍ତ ପିଆସେ,
ଅସ୍ୱୀକାର କଲି ଏ ମାଟିରେ
କେଉଁ ମଧୁ ଆଶେ ?

ବିଦେଶିନୀ ବାନ୍ଧବୀର ସମ
ସମ୍ମତିର କଟାକ୍ଷ ପ୍ରସର୍;
ମଲମା ଆଲିଙ୍ଗି ନେଲ୍
ଓଷ୍ଠପୁଟେ ସୁଧାପାନ ଧରି ।

ମୃଗନାଭି ପ୍ରେମ ନେଇ
ତାହାପରେ ଝୁଲିଲି ଚକଟେ

ମେଦୁର ମେଘ ତୋରଣ ଲଙ୍ଘି କେଉଁ ଦୂରର ଇଙ୍ଗିତେ
ତାରକାରେ ତାରକାରେ,
ଶିଖାର ପ୍ରକାଶେ ଅନ୍ଧ ପତଙ୍ଗର ସମ
ଆକାଶର ପଥେ ପଥେ ଉଚ୍ଚ ସନ୍ତରଣ ।
ଗାଇଲି ମୁଁ ସ୍ୱର୍ଗ ଅର୍ଥୀର ଗାନ
ଶ୍ୱେମନ୍ଥନ କରି ଖାଲି ଇଚ୍ଛା ଅଭିମାନ
ସେ ସଙ୍ଗୀତ-ମୂର୍ଚ୍ଛନାରେ; ଅନୁଭବ କଲି ଅକସ୍ମାତ
ସମବେଦନା ବନ୍ଧନେ ଛନ୍ଦ ତା'ର
ଅନ୍ତରେ ମୋ ପ୍ରହାରେ ଆଘାତ ।
ସହସା ଦେଖିଲି ଅଗ୍ରେ ଧରଣୀର ମସୃଣ ଛାୟା
ସ୍ନିଗ୍ଧ ପରିବେଶୀତେବ ପ୍ରାନ୍ତରର ମାୟା,
କେତେ କାଷିତ ଓଷ୍ଠର ସ୍ପର୍ଶ, କେତେ ବାହୁ ଆଲିଙ୍ଗନ,
କେତେ ପାବବନ୍ଧ ଉନ୍ମୋଚନ,
ଗୁଣ୍ଠନ ତଳର କେତେ ଅଶ୍ରୁ ଅଭିମାନ
ତନୁ ତନୁ ସାଥେ ବେପଥୁର କମ୍ପମାନ ।
ଦେଖିଲି ମୁଁ ମିଥୁନର ଛବି
ଗୁଚ୍ଛ ଗୁଚ୍ଛ ଶସ୍ୟ ଆଜ ଟଙ୍କ-ଶ୍ୱେତ ମଧୁର ମାନବୀ ।
ସ୍ୱେଦ ଦେଇ, ରକ୍ତ ଦେଇ ଗୃହେ ତା'ର ଆଣଇ ମାନବ
ନୂତନ ପ୍ରାଣର କଳରବ
ତାର ମଧ୍ୟଦେଇ ଉଚେ । କ୍ଷୁଣ୍ଣ କରି ଆଶା ଓ ଆୟୁଷ
ସେ ଆଣଇ ପ୍ରାଣର ସନ୍ତୋଷ ।
ଇଚ୍ଛାମଞ୍ଚ ନବାଟିର ପାଶେ
ଦେଖିଲି ସେ ବାଳକାଟି ଭଲପାଇ ଆଜ କା'ର ବଧୂ ହୋଇଗଲା
ମୋ ପୃଥିବୀ ସେ ହୋଇଣ ଆସେ ।

ଆକାଶର ଯେତେ ମାଳ ଯେତେ ନଶା ଦୂର ସଙ୍କେତର
ଆଚମ୍ବିତେ ହେଲା ଦୂରତର
ମୃତ୍ତିକାର ବଷପାତ୍ର ଦୁଇହାତେ ତୋଳ
ଆକଣ୍ଠ ତୃଷାରେ ପାନକଲା ।
ଅଗ୍ନିସ୍ନାନେ ପତଙ୍ଗର ସମ, ହୋଇ ଉନ୍ମତ୍ତେଣା
କ୍ଷତ ରକ୍ତ ସ୍ନେହା
ହୋଇ, ପଡ଼ଗଲା ନରଲୋକେ ।

ଚେତନାର ନୂତନ ସନ୍ଧ୍ୟାରେ
ଦେଖିଲ ବଳିଷ୍ଠ ବାହୁ ଘେର ଏ ଧରିତ୍ରୀ
ବଧୂସମ ଭିଡ଼ିଅଛୁ ମୋତେ ।

●

# ବାମପଥ

ଜ୍ଞାନୀନ୍ଦ୍ର ବର୍ମା

ଶବ-ତାନ୍ତ୍ରିକ ଚନ୍ଦନ ଦୁନିଆର
ବରିନେଇଥିଲି ବାମାଙ୍ଗିମାର ପଥ
ଆଜି ନେଇଅଛି, ଶବ-ଯାନ୍ତ୍ରିକ ସଖି
ତମରି ସନ୍ନିଧେ ବାମପଥେ ଗୁଳ ରଥ ।

କିନ୍ତୁ ସେ ପଥେ ଫୁଲ ଆଉ ନାହିଁ ଫୁଟେ,
ପ୍ରଣୟ କାବ୍ୟ, ସୁର ଆଉ ନାହିଁ ଝରେ,
ଯାହାର ଜାଲେ ଯୌବନ ମରିଅଛି,
କଙ୍କାଳ ତଳେ କବି ଅଭିସାର କରେ ।

ଆଗରେ ପଡ଼ିଛି ଚିର ବନ୍ଧୁର ପଥ
ସ୍କନ୍ଧେ ପଡ଼ିଛି ତୁମରି କଳ୍ପନା ତନୁ,
ବାମପଥ ଦିଏ ଖାଲି ତାଣ୍ଡବ ଡାକ
ଧ୍ୱଂସର ପରେ ସୃଷ୍ଟି ରଚୁଛି ଯେଣୁ ।

ହୁଏତ ତମରି ଶବଟାକୁ ତଳେ ରଖି
ଅସ୍ଥିରୁ କାଟି ମାଂସ ନିଏ ତ ଚାଖି,
କିନ୍ତୁ ତାକୁ ସେ ଇତିହାସ ପାଇଁ ରଖେ
ଯାଉଅଛି ସେ ଯେ ହାତଠାରି ମତେ ଡାକି ।

ତୁଏତ ତମକୁ ବଞ୍ଚାଇବାର ହେଲେ
ବାମପଥ ଛାଡ଼ି ଦକ୍ଷିଣେ ଯାଇପାରେ,
ତମର ଚଳନ୍ତ ଯୌବନ ପାଲଟାଇ
ଜୀବନକୁ ପୁଣି ସମ୍ଭୋଗ ଦେଇପାରେ ।

କହ ସଖି କହ, ଲକ୍ଷ କ୍ଷୁଧାର ପାଶେ
କେମନ ରଚିବ ଗୃହୁ ଅନ୍ନର ଭୋଜ,
ଆମ୍ଭାରେ ସେ କ ସନ୍ତୋଷ ଦେବ କହ,
ସଂଗ୍ରାମେ କାହିଁ ଢାଳିବ ନୂତନ ତେଜ ।

ସଂଗ୍ରାମେ ତହୁଁ ବଢ଼ନେଇଅଛି ପଥ
ବାମପଥେ ରଥ ଅଶ୍ୱ ଯାଇଛି ଗୃଳି,
ଦକ୍ଷିଣେ ଯେତେ ରକ୍ତ-ଶୋଷକଦଳ
ସେ ସକଳେ ଦେବ ହତ୍ୟାର ଶର ଗୃଳି ।

ଶବରୁ ତଥାପି ତମେ ଶୀଖିକାର ଛାଡ଼ି
ହତ୍ୟାରେ କାହିଁ ଜୀବନ ସଂବକାଶ ?
ପ୍ରତିହିଂସା ଏ ମୋର ଭାବନାକୁ ସଖି,
ପ୍ରତିକାର କହ ଏହାଠାରୁ ଅଛି କସ !

ଶବ-ଦେହ ଧରି ଦକ୍ଷିଣେ ତମେ ଯାଅ
ତନୁ ଲଭ ପାଇଁ ରକ୍ତ ମାଗିବ ଦ୍ୱାରେ,
ଯଦି କେହି ଦେବ, ଅସ୍ତ୍ର ଛାଡ଼ିବ ସତ,
ଦୀକ୍ଷା କରିବ ଜୀବନରେ ନବ ବ୍ରତ ।

ମାତ୍ର ଏହା ଯେ ସତ୍ୟ ଓ ପ୍ରମାଣିତ
ତମ ହାତେ କେହ୍ବ ଟେକିବାର ଆଗୁ ଦାନ,
ଅଗ୍ନିରେ ତବ ଯନ୍ତ୍ର କରୁଛ ରହିଥାଏ
ତାକୁ ନେବାପାଇଁ କରିବନ ଦ୍ୱିଧା ଜ୍ଞାନ ।

ସେତକ ବ ନେଇ ଦେବ କ ସେ ନାହିଁ ଦାନ,
ଦାନ ଆଜ କାହିଁ ମୂଲ୍ୟ ସେ ହୋଇଯାଏ,
ମୂଲ ପାଉଥିଲେ ମଣିଷର ଲକ୍ଷ୍ଯ, ଲୁହ
କଙ୍କାଳେ ଖାଲି ସୃଷ୍ଟି କପାଇଁ ରୁଏ ।

ତଥର ପ୍ରଶ୍ନ ଆଜ ନାହିଁ ସଖି, ବାକ
ତମର ଶବର ଗଳନ୍ତ ଗନ୍ଧ ଆଜ,
ଅନ୍ଧ କରୁଛି ଗୋଟିଏ ସରଣୀ ପରେ,
ଦୂରେ ଉଠିଅଛି, ସଂଗ୍ରାମ-ବେଣୁ ବାଜ ।

ତମର ଗଳନ୍ତ ଗନ୍ଧ ଏ ଝଟୁଥାଉ
ସ୍କନ୍ଧେ ତମର ଶବ ରହିଥାଉ ପଡ଼ି,
ଅଗ୍ନିତ ଦହନେ ତାଣ୍ଡବ ତାଳ ପାଇଁ
ମୋର ଗତି ସଦା ବାମପଥେ ଦେଉ ରଡ଼ି ।



# ଅଲକା ସାନ୍ୟାଲ

ଗୁରୁପ୍ରସାଦ ମହାନ୍ତି

ତୁମକୁ ବା ସଞ୍ଚିବାବୁ ଦେଖିଥିଲେ କେବେ
ଜାଣେନାହିଁ ଅଲକା ସାନ୍ୟାଲ
ସେତେବେଳେ ଆକାଶରେ ସ୍ୱର୍ଣ୍ଣଚିତା ବାଘ ଅବା ହରିଣର ଛାଲ
ଅବା ଥିଲା ଗୋଲ ହୋଇ ହଳଦିଆ ଜହ୍ନର ମଶାଲ ।

ମୁଁ ତୁମକୁ ଦେଖେ ଆଜ ତୁମେ ହଅ ବ୍ଲାଉଜର ବୋତାମ
ଚ୍ଚ'ଦାଗ ତୁମେ ଧୂଅ ସେମିଜରୁ ଗରମ ପାଣିରେ
ତୁମେ ପୁଣି କଁଥା କୁହ ମୁହଁପୋଛ ଟେବୁଲ ସେପାଖେ
ତୁମେ ପୁଣି ଉଠିଆସି ଆସ୍ତେ ବସ ପାଖ ଚଉକିରେ ।

ଦି'ପହରର ଧୂଳି ଉଡ଼େ 'ଖାକି ଆଉ ଫିଲ୍‌ଡ଼ ଗ୍ରେ ଧୂଳି' ।
ସିଗାରେଟ୍ ଧୂଆଁ ପୁଣି ସ୍ଥିର ହୋଇ ବସିଯାଏ ଜରିଫୁଲ
କାଗଜ ଫୁଲରେ

କାଉ ଆଉ ବାଦୁଡ଼ିର ଚେଁ ଚୁଁ ମିଶିଯାଏ ଏକାଠି ବାହାରେ
କୋଇଲାର ଧୂଆଁ ପୁଣି ନଶ ମୋଡ଼ି ମୋଡ଼ି ଉଠେ, ରିକ୍ସାବାଲା
[ବାଟଯାଏ ଭୁଲି ।

ତୁମକୁ ଦେଖେ ପରେ ଯୋତା ଷ୍ଟ୍ରାପ୍ ତୁମେ ଧୀରେ ଖୋଲ
ତୁମେ ଆସି ଲେଟିପଡ଼ ବିଛଣାରେ ବେଣୀ ଆଉ ଶାଢ଼ି ଅସଂଯତ
ତୁମେ ପୁଣି ଆସ୍ତେ ଉଠ ଲୁଗାପଟା ଠିକ୍‌ଠାକ୍ କର
ଟାଉନହଲ୍ ସଭାରେ ମୁଁ ପାଏ ପୁଣି ତୁମର ସାକ୍ଷାତ ।

ତୁମକୁ ବା ସଚ୍ଚିବାବୁ କେବେ ଥରେ ଚିତ୍ରରଥ ଗନ୍ଧର୍ବ ହାତରୁ
ଛଡ଼ାଇ ଆଣିଲ୍‌ବେଳେ ତୁମେ କଲ ଜୟଜୟକାର
ତା ପରେ ବା ପୁଣି କେବେ ନୂଆଖାଲି ପଠାଣ ବସ୍ତିରୁ
ଭାରତର ସ୍ୱାଧୀନତା ଦେଲ ପୁଣି ବିଶ୍ୱସ୍ତ ନିସ୍ତାର ।

ଦ୍ୱିପ୍ରହର କ୍ଲାନ୍ତ ହୁଏ ସନ୍ଧ୍ୟା ଆସେ ରେଳପୋଲ ଆଡ଼ୁ
କୋଇଲା ଚୁଲିର ଧୂଆଁ ଆଉ ଦେଖାଯାଏ ନାହିଁ,
ଚୁପ୍‌ଚୁପ୍ କାଉ ଓ ବାଦୁଡ଼ି
ସିଗାରେଟ ଧୂଆଁ ହୁଏ ଆହୁରି ଜମାଟ ପୁଣି
ନରଗିସ୍ ନେତାଜୀ-ଫଟୋରେ
ଆକାଶରେ ଜହ୍ନ ପୁଣି ଦେଖାଦିଏ ଅକସ୍ମାତ ଗୋଲ୍‌ତାର
ତଳ ଓଠ ରାଗରେ କାମୁଡ଼ି ।

ମୁଁ ତୁମର ଶୁଣେ ଆଜ ଝଡ଼ ପରି ଭୀଷଣ ବକ୍ତୃତା
ମୁଁ ଦେଖେ ତୁମର ଦେହ ହଠାତ୍ ଯାଏ କାଦୁଅ ପାଲଟି
ଛିଣ୍ଡା ଚିଠି କାଗଜରେ ତୁମର ଯା ଅବଶିଷ୍ଟ ରହେ
ପବନ ସେତକ ନଏ ସଡ଼କରୁ ସାଉଁଟି ସାଉଁଟି ।

ଭଙ୍ଗା ନୂଆଖାଲିରେ ବା କଲିକତା ନୂଆଦିଲ୍ଲୀ ଆଡ଼େ
କାଉ ଆଉ ବାଦୁଡ଼ିର ଚେଁ ଚୁଁ, ପୁଣି ଏତେ ଯିବା ଓ ଆସିବା

କଣ୍ଟକରେ ଗଳ ଗଳ ସ୍ରସ୍ତା ଛକରେ ଛକରେ
ସତର ପ୍ରସୂତି-କଷ୍ଟ ସକାଳର ରୁଗ୍‌ଣ ଜନ୍ମ ନେବା ।

ତା ଭିତରେ ତୁମେ ପୁଣି ପ୍ରେମ କର, ଗର୍ଭବତୀ ହୁଅ
ସିନେମାର ହ୍ୟାଣ୍ଡବିଲ୍ ମୁଁ ଦେଖୁଛି ତୁମର ଦେହରେ
ପବନ ତୁମକୁ ଯେବେ ଆସ୍ତେ ନାଏ ବାଳରୁ ସାଉଁଟି
ମୁଁ ତୁମର ସ୍ୱପ୍ନ ଦେଖେ ମୋର ଢିଲା ପାଇଜାମା
କାମିଜର ଅମଙ୍ଗବନ୍ଧରେ ।

●

# ବେଙ୍ଗ

ଚିନ୍ତାମଣି ବେହେରା

ଏଇ ଯେ ବସିଛି ବେଙ୍ଗ
ଚିନ୍ତାମଗ୍ନ ଦାର୍ଶନିକ ଭଳି
ତୁମେ କି ଦେଖିଚ ତାକୁ ?
ତୁମେ କି ଚିହ୍ନିଚ ତାକୁ ?
ଦୁଇଟି ତା ସ୍ଥିର ଆଖି ଭରି
ରହିଅଛି ହତାଶ କାଳିମା
ଅବସରପ୍ରାପ୍ତ ବୃଦ୍ଧ
ହୁଏତ କେ ଅଧ୍ୟାପକଙ୍କର ।
ହୋଇପାରେ ସେ ହତାଶା
ଜ୍ଞାନଚର୍ଚ୍ଚା ଶେଷ ପରିଣତି ।

ଅବା କେଉଁ ବୃଦ୍ଧ ବିଚାରକ
ଶେଷପଥେ ଡାଇବେଟିସ ଭୋଗୀ
ମୁହୂର୍ତ୍ତର ଅବସରେ
ଧ୍ୟାନମଗ୍ନ ହୋଇ ମନେ ମନେ
ଦେଖେ ତାଙ୍କି ପରିଚିତ କଳା କୋଟ୍ ଏକ
ଭାବଇ ଅନ୍ତତ କିମ୍ବା ଦଣ୍ଡାଦେଶ ଅସାର ମନ୍ତବ୍ୟ
ସଂସାରର ଦୋଷୀ ଜନ ପ୍ରତି;
ହୁଏତ ଭାବୁଚି ମନେ ଦେଖୁଚି ନିଷ୍ଟଳେ

ଏ ନୂଆ ଗୁଳଚ ତା ବାଟେ
ଯୀଶୁ ଗାନ୍ଧୀ ରକ୍ତ ପିଇ ପିଇ,
ସେଇଭଳି ବସିଚି ଏ ବେଙ୍ଗ
ତୁମେ କି ଦେଖିଚ ତାକୁ ?
ତୁମେ କି ଚହ୍ନିଚ ତାକୁ ?

ମାଟି ସଙ୍ଗେ ମାଟି ଭଳି ମିଶି
ଭିଡ଼ି ତାର ସରୁ ସରୁ ପାଦ
ବସିଅଛି ଯାତ୍ରୀ ଏକ
ଯାତ୍ରାପଥେ ହୋଇ ଗତକ୍ଲାନ୍ତ ।
ସେହିପରି ବସିଚି ଏ ବେଙ୍ଗ
ଚାହିଁଅଛି ଦୂରପଥେ ପୁଣି,
କାହିଁକି ଚାହିଁଚି ? କଅଣ ଚାହୁଁଚି ?
ହୁଏତ ଚାହୁଁଚି ଆଶା—ସାନ୍ତ୍ୱନାର ଆଶା
ଦିବସ ଆଲୋକ କମ୍ପା ଦୂର ରହି ନକ୍ଷତ୍ରର କାନ୍ତି
କମ୍ପା କରୁ ଖଦ୍ୟୋତ-ଆଲୋକ ।
ମାଆ-ଭାଇ-ଭଉଣୀ ତା ନାହିଁ
ଏ ବିଶାଳ ଧରଣୀର ପୁରେ
ହରାଇଚି ସାଥୀ ପରିଜନ
ଜୀବନର ଅନ୍ତରଙ୍ଗ ବନ୍ଧୁ
ସତେ ଅବା ମୂର୍ତ୍ତିବନ୍ତ ବ୍ୟଥା ପିଣ୍ଡ ଏକ ।
ସେଇଭଳି ଏଇ ବେଙ୍ଗ
ବସିଅଛି ତୁମ ଆଗେ ଏକାକୀ ନିର୍ଜନ
ତୁମେ କି ଦେଖିଚ ତାକୁ ?

ତୁମେ କ ଚହ୍ନିଚ ତାକୁ ?
ଏଇ ବେଙ୍ଗ ଦେଢେ ତାର ପିନ୍ଧ
ଖଦଡ଼ିଆ କଳାକୋଟ କଳା ପାଇଜାମା
ଉପାସନାରତ କେହ୍ବି ଯାଜକ ବା ପୁରୋହିତ ସମ
ଧୀର ସ୍ଥିର ଶାନ୍ତ ଘଟବ
କୀଟର ଅପେକ୍ଷା ରଖେ
ଖାଦ୍ୟର ଅପେକ୍ଷା ରଖେ
ବକ୍ଷେ ଭରି ଗ୍ରାସ-ପ୍ରଲୋଭନ ।
ତୁମେ କ ଚହ୍ନିଚ ତାକୁ ?
ତୁମେ କ ଦେଖିଚ ତାକୁ ?
ଫକ୍ ଫକ୍ ଡେଇଁ ଯାଇ
ଲୁଚିଯାଏ ଆଖି ଅନ୍ତରାଳେ
କେଉଁ ବଲେ ଅବା ବୁଦାମୂଳେ
ଦୃଶ୍ୟ-କାବ୍ୟ ଅଭିନୟ ସାରି
କଳାପଟୁ ଅଭିନେତା ସମ ।
ଅବା ଶିଶୁ ଜ୍ଞାନାଲୋକ ଭୟେ
ଯେଉଁପରି ନଏ ଯାଇ
ତା' ଜନମୀକୋଳର ଆଶ୍ରୟ,
ଗ୍ଭହେଁ ଅଜ୍ଞ-ଅନ୍ଧକାର
ସେଇ ଶାନ୍ତ—ସେଇ ଶାନ୍ତ ଶ୍ରେୟ
ତାଆପାଇଁ—ହୁଏତ ବ ଶ୍ରେଷ୍ଠ ଜ୍ଞାମୀ ପାଇଁ,
ସେହିପରି ଏଇ ବେଙ୍ଗ
ନଏ ଶାନ୍ତ-ସୁଡ଼ଙ୍ଗ ଆଶ୍ରୟ
ତୁମେ କ ଦେଖିଚ ତାକୁ ?

ତୁମ ଆମ ଗୋଡ଼ତଳେ
ଏଇ ବେଙ୍ଗ ଗଳିଯାଏ ପୁଣି
କେବେ ଘୃଣ୍ୟ—କେବେ ପୁଣି ସଚପଳ ଖେଳପିଲା ସମ
ସରଳତା-କୁତୂହଳ—କେବେ ବା ସେ ଆତଙ୍କର ମୂର୍ତ୍ତି ।
ତୁମେ କି ଦେଖିଛ ତାକୁ ?
ପୁଣି କେବେ କ୍ରୀଡ଼ାକାମୀ ସଂସ୍କାରବିଶ୍ୱାସୀ
ପଲ୍ଲୀଗ୍ରାମ ବାଳକବାଳିକା
ଏଇ ବେଙ୍ଗ-ବଚା ଧରିଆଣି
ଗ୍ରାମଦାଣ୍ଡେ ବିରଚନ୍ତି ନୃତ୍ୟ
କରିବାକୁ ବର୍ଷା ଆବାହନ
ବୃଷ୍ଟିହୀନ ଶସ୍ୟହୀନ ଦେଶେ,
ଏଇ ବେଙ୍ଗ ବର୍ଷା-ସମ୍ବାଦର
ଅଭିବ୍ୟକ୍ତି-ଛନ୍ଦ-ପରିଜନ
ତୁମେ କି ଚିହ୍ନିଛ ତାକୁ ?
ପୁଣି ତୁମେ ଦେଖିଚ କି
ଆଜୀବନ ଉଙ୍ଗାଜୀବୀ କେଉଁ ଲେଖକର
ଶୋଚନୀୟ ଶେଷ ପରିଣତି ?
ଖେଳାଇ ଆନନ୍ଦ ଦେଇ ଅନ୍ୟକୁ ସେ ନିଜେ
ହୁଏ ଶେଷେ ମୃତ୍ୟୁଗ୍ରସ୍ତ ଜଡ଼ପିଣ୍ଡ ଏକ
ଅନ୍ୟର ସେ 'ଆହା' ପଦ
ଅବା ଘୃଣା ବିରକ୍ତିର ପାତ୍ର !
ସେଇପରି ଏଇ ବେଙ୍ଗ
ବିଜ୍ଞାନଶ୍ରେଣୀର ଏକ ଲାବୋରେଟେରୀରେ

ପଡ଼ିଥାଏ କଣ୍ଠାବନ୍ଧ ପ୍ରାଣହୀନ ହୋଇ
ତୁମେ କ ଦେଖିଚ ତାକୁ ?
ପଡ଼ିଥାଏ ଅବହେଳେ
ପଚେ ଅବା ଘୃଣ୍ୟ ବସ୍ତୁ ଏକ ।
କିନ୍ତୁ ଏଇ ବେଙ୍ଗ—ଙ୍ଖୁଣ୍ଡବନ୍ଧ ଏଇ ଶାନ୍ତ ବେଙ୍ଗ ।
ହୁଏତ ବରଇ ମୃତ୍ୟୁ ତୁମ ଆମ କୌତୁକର ପାଇଁ
ଦେବପୁତ୍ର ଯୀଶୁ ଭଳି ଅବା—ମର୍ତ୍ତେ ଯୀଶୁ ଜନ୍ମପାଇଁ
ମନୁଷ୍ୟର ଜ୍ଞାନଚର୍ଚ୍ଚା—ମନୁଷ୍ୟର ସୁଖଶାନ୍ତି ପାଇଁ
ଏଇ ବେଙ୍ଗ ଦେଇଯାଏ—
ଶେଷେ ତାର ପ୍ରାଣବଳି ଆହା
ପୃଥିବୀର ପ୍ରୟୋଜନ ପାଇଁ ।
ତୁମେ କ ଚହ୍ନିଚ ତାକୁ ?
ସେଇପରି ତୁମ ଆମ ପ୍ରାଣ
ମୃତ୍ୟୁ ପରେ ଯାଏ କେଉଁ ଦେଶେ ?
ଆଶ୍ରା ନଏ କେଉଁ ତରୁମୂଳେ
ତୁମେ କ ଦେଖିଚ ?
ତୁମେ କ ଦେଖିଛ ପୁଣି
ଏଇ ଦେହେ ପ୍ରୟୋଜନ ଲଗେ ଅବା ନାହିଁ
ଖେଳ ପାଇଁ—ଜ୍ଞାନଚର୍ଚ୍ଚା ପାଇଁ
ଯାଦୁକର କେଉଁ ମାୟାବୀର
ମୃତ୍ୟୁ ପରେ ?
ତୁମେ କ ଦେଖିଚ—ତୁମେ କ ଚହ୍ନିଚ
ଏଇ ବେଙ୍ଗ—ପିତାମହ ବେଙ୍ଗ ?



# ସାର୍

ବେଣୁଧର ରାଉତ

ସାର୍ କେବେ କହୁଥିଲେ କ୍ଲାସରେ ବାଲ୍ୟର ଏକଦା,—
(ପୂର୍ବପୁରୁ ମନେନାଇଁ)—
ଆବେଗ ଓ ଇତିହାସ ମିଶା ଅଧା ଅଧା—
ସୁନାର ଫସଲ କଥା ଧରାର ଏ ସ୍ୱର୍ଗିକ ମାଟିରେ,
ବୈଦିକା ସୁ-ବର୍ଣ୍ଣା ଉଷା-ରଞ୍ଜିତ ଏ ଜନର ମସ୍ତରେ
ସୂର୍ଯ୍ୟର ରକ୍ତିମାସ୍ନାତ ମେରୁଗିରି ସୁନାର ଭୂଧର;
ବରୁଣର ନୀଳଦେଶେ କଳିଙ୍ଗର ବୋଇତ-ବନ୍ଦର
ଥାପିବା ସୁବର୍ଣ୍ଣଦ୍ୱୀପ; ସୁନାସିଂହ ହସଖେଳ କଥା—
ଏଇପରି କେତେ କ'ଣ—ମିଠବାକେ ଅଦ୍ଭୁତ ବାରତା ।
ସାର୍‌ଙ୍କ ଆବିଗ୍ନ କଣ୍ଠ ବାଲ୍ୟର ମୋ ବିହ୍ୱଳ ଆଖିରେ
ଆଙ୍କିଥିଲ ଅତୀତର ପ୍ରାଣବନ୍ତ ଛବି ଏକ ବର୍ଣ୍ଣାଢ୍ୟ ଭୂମିରେ ॥

ଇଆପରେ ଦେଖିଛି ମୁଁ ବାରବାର ସୁବର୍ଣ୍ଣର ସେଇ କଳ୍ପଛବି
ଆପଣା ସୃଜନମୁଗ୍ଧ ଶିଳ୍ପୀ ପରି ପ୍ରାଣ ଦେଇ, ଦ୍ରବି;
ସେଇ ଛବି ବିଭୂତିର ଗହଣରେ ସାର୍‌ଙ୍କର ଆବିଷ୍ଟ ସଙ୍ଗୀତ
ଶୁଣିଛି ମୁଁ ଅସୁମାରି ମୂର୍ଚ୍ଛନାରେ ହୋଇ ବିହ୍ୱଳିତ ॥

କିନ୍ତୁ ସେ ଅଞ୍ଜନ ଅବା ନିଭିଗଲା ! ଦେଖିଲି ମୁଁ
ସୁନା ଖାଲି ସୁନା;
ବାଲ୍ୟର ବ୍ୟଞ୍ଜନା ହାୟ ଭୁଲିଗଲି ରଖି ମାତ୍ର କସୁଟି ନମୁନା-

ବନ୍ଦନା, ସୁବର୍ଣ୍ଣ-ଦ୍ୱୀପ, ଉଜ୍ଜ୍ୱଳ ଭୂମି, କେତେ କେତେ ସୁନାଫଳ,
ସୁନାର ଫସଲ ।
ଫସଲକଟାର ଗୀତ ଭୁଲିଗଲ ସାର୍‌ଙ୍କର—ଭୁଲିଗଲ
ସୁନାର ଗଜଲ ।
ଯାହା କେତେ ରହିଗଲା ସାଦା ସାଦା ପ୍ରତିଧ୍ୱନି କମ୍ପିତ ଲହର—
ଆବେଗର ସତ୍ତା ନାହିଁ, କାନ୍ଦିଁ ଗଲା ହଜି ସେଇ
ପ୍ରାଣର ବହର୍ !!
ସାର୍‌ଙ୍କୁ ଭେଟିଲି ଏଥର ଅକସ୍ମାତ୍ ଶୀର୍ଣ୍ଣ ଏକ
ସଂହୃତ ସନ୍ଧ୍ୟାରେ ।
ଜନ ବାର୍ ଦୁର୍ବାଦଳ ବନ୍ଧନରେ ଅଧା ଅଧା
ଆଲୋକ-ଅନ୍ଧାରେ ।
ସହଜେ ହେଲନି ଚିହ୍ନି; ଏ ମୂର୍ତ୍ତିରେ ଅଙ୍କିତ ବା ଜଗର ବୟସ
ଅମରଚସ୍ମରେ ଦେହେ ପରିଚୟ, ପରିଚୟେ
ଅବୋଧ ରହସ୍ୟ ॥
କ୍ୟଥିତେ କହିଲେ ସାର୍, ସୁଖୀ ହେଲି ଦେଇଯିବି
ମୋର ଶେଷବାଣୀ—
ଶେଷର ଭରତବାକ୍ୟ—ସତ୍ୟଟିଏ—ହୃଦୟର
ନଭୃତ କାହାଣୀ ।
ସୁନା ଫସଲର ଗାନ, ସୁନାମେରୁ, ସୁନାର ବାରତା
ଯାହାକୁ ଯା ଦେଇଥିଲି ସୁନା ଆଖି—ସବୁ ଅତିକଥା ।
ସକଳ ଇ ସେ ଆଖିରେ ସୁନା ବଣେ, (ଦେଇଚ ଆମସ୍ସ !)
ସେ ସୁବର୍ଣ୍ଣେ ଘାନ ଦୁଃଖୀ—ଦୁଃଖତାପ ବଣେ ଛଳ
ମଞ୍ଜୁଳ ଶ୍ରାମସ୍ସ ।

ସ୍ୱପ୍ନଟି ଫେରାଇନେବ ସୁନା ଆଖି, ଯାବତ ସୁନାର;
ସତ୍ୟରେ ଆବେଗ ପ୍ରାପ୍ୟ ମିଶେ ନାଇ, ଯଥା ଏଇ
ଆଲୋକେ ଅନ୍ଧାର ।
ଆସନ୍ତା କେଉଁଟି ଯେବେ କାଲସର, ପିଢ଼ି ପିଢ଼ି
ସେ ଦରିଦ୍ରା ଦାନ
ବାଲ୍ୟର ସମଗ୍ର ମନେ ଫୁଟାନ୍ତୁ ମୁଁ ମାଟିଫୁଲ
ଯାତନାର, ଅଥଚ ଶାଳୀନ ॥
ଦେଶ ମୁହିଁ ଭଲପାଏ । ତଥାପି ଏ ଦେଶଟା କ
ବଡ଼ଇ ଖିଆଲ !
ଚଳନ୍ତିର ଧାରା ଧର୍ମେ, ଧନେ, ମନେ, ଜନେ ଜନେ
ଆକାଶ ପାତାଳ ।
ଦୁଏତ ଫଳାଇଲ ସୁନା ଏ ପାଟରେ କେନ୍ତୁ କେନ୍ତୁ
ନଖିଳ ବିଳାସେ,
ସେ ପାଖେ ଜୀବନ ଖୋଜେ ଅନ୍ତ ପାଖେ
ମଣିଷଇ ମୃତ୍ୟୁର ପରାସେ ।'
କସ୍ତୁର ସମସ୍ତ ରଙ୍ଗ କହିଲେ ସେ, 'ଯାହା ମୋର
କହିବାର କଥା
ବୋଧ ଅଛି; ଆଚ୍ଛା ତୁମେ ଦେଖିଥିବ
ବମ୍ବେ ଦିଲ୍ଲୀ ଅବା କଲିକତା ।
ଏଣିକି କହିବା ଆଗେ ବସୁଧା ଇ ପରିବାର,
ଅବା ମୈତ୍ରୀବାଣୀ
ପାଖର ମଣିଷ ଚିହ୍ନ' । ସାର୍‌ଙ୍କର ସ୍ୱରାଣିରେ
ଏବେ ମୁହିଁ ନୂଆର ସନ୍ଧାନୀ ।



## ବଣଭୋଜି

ଜାନକୀବଲ୍ଲଭ ମହାନ୍ତି

ଆମେ କେତେ ନରନାରୀ ଧନୀ ମଧ୍ୟବିତ୍ତ
ମାନମାନ୍ୟ ତଥା ସ୍ନେହାସ୍ପଦ
ଆପଣାର ସ୍ଥିତି ଆଜି ଉଲ୍ଲାସକୁ ଭରଦେଇ ମଟର ବସ୍‌ରେ
ଆମେ ଦଳେ ଦୂରେ ଛୁଟିଗଲୁ
କେତୋଟି ମୁହୂର୍ତ୍ତ ପାଇଁ ଆମର ଯା ପରିଚୟ
ତାହା ଭୁଲିଗଲୁ
ସେତେବେଳେ ଆମ୍ବଗଛେ ବଉଳସମ୍ଭାର
ଦେହ ଓ ମନରେ ରଙ୍ଗ
ରଙ୍ଗ ପୁଣି ଅଧରେ ଅଧରେ
ଦକାକଣା ଗହଳ ଚହଳ
ଗ୍ରାମ ଉପକଣ୍ଠେ···
କାଶ ଫୁଲ ମେଞ୍ଚ ସଲକ୍ଷଣ
କଳଘୋଡ଼ା ନଉଡ଼ି ଖେଳରେ
କମ୍ପୁଥିଲା ମେଳନ ପଡ଼ିଆ
ଝାଞ୍ଜ, ଖୋଳ, ଖଞ୍ଜଣି ବାଦ୍ୟରେ

ଆଖିରେ ନାଚିଲା ବନ୍ଧୁ ଦିଗ୍‌ବଳୟ
ଝରକା ଭିତରୁ ଆମେ ସିନେମା ଦେଖିଲୁ ।

ଅଚିହ୍ନା ଜଗତ କେତେ ଅଚିହ୍ନା ମୁଖଶ୍ରୀ
ବାଟରେ ଅଜଣା ପଥିକ .
ହୁରୁଡ଼ା ବଳଦ କାନ୍ଧୁ ଆମଲାଗି ଯୁଆଳ ଫିଟିଲା
ଆମେସବୁ ପରସ୍ପରେ ଭଲକରି ନିଜକୁ ଚାହିଁଲୁ ।

ଆମେ ବାଛିନେଲୁ ଏକ ରନ୍ଧନର ସ୍ଥଳୀ
ସମ୍ପୂର୍ଣ୍ଣ ଅପରିଚିତ, ନୁହେଁ ଯା ଆମର
ଯାହାକୁ ଏଇଠି ରଖି ଆମେ ସବୁ ପୁଣି ଫେରିଯିବୁ
ତଥାପି ତାହାକୁ ଘେରି
ଆମେ ସବୁ ମନଇଚ୍ଛା ବହୁତ ଖେଳିଲୁ ;
ତହିଁରୁ ମିଳିଲା ଯାହା ଆନନ୍ଦରେ ତାକୁ ଫେଣ୍ଟିଦେଇ
ଆମେ ସବୁ ଏକଥେ ଭୁଞ୍ଜିଲୁ ।
ପଲ୍ଲୀ ଏବଂ ସହରକୁ ଯୁକ୍ତକଲୁ
ଯୁକ୍ତହେଲୁ ନିର୍ଜନ ପର୍ବତ ସାନୁ, ହ୍ରଦ ଆଉ ଦେବାଳୟ ସହ
କେତେଗୋଟି ମୂହୂର୍ତ୍ତକୁ ଘଷିମାଜି
ଆନନ୍ଦରେ ଚକ୍‌ଚକ୍ କଲୁ ।

ତା'ପରେ ଗୁଡ୍‌ବାଇ, ନମସ୍ତେ ନମସ୍ତେ
ମଟର ରହିଲା ଆସି
ପୁଣି ଆମେ ଫେରିଗଲୁ
ଯେ ଯାହାର ଖୋପ ଭିତରକୁ
ସେଇ ଆମ ବଞ୍ଚିବାର ଶଗଡ଼ଗୁଳାକୁ ।

# ମାଷ୍ଟ୍ରାଣୀ

ରମାକାନ୍ତ ରଥ

ଦୁଇ ଆଉ ଦୁଇ ମିଶି ଚାରି, ଏଡ଼େ ସ୍ପଷ୍ଟ ସତ୍ୟର କାହିଁକି
ଲୋଡ଼ା ମୋର ଯୌବନର ସାହାଯ୍ୟ ? ହେଲେ ନାଁ ହେଲେ ମୁଁ
ପ୍ରୌଢ଼ା ହୋଇଯିବି ଏବଂ ଚଷମାର ମୋଟା ଫ୍ରେମରୁ ମୋ
ପଶିଯାଇଥିବା ଗାଲ ଝୁଲୁଥିବ ବାଦୁଡ଼ି ପରି, ବା
ମୁଁ ଘୋଷାରି ଚାଲୁଥିବି ଅସହଜ ପୃଥୁଳ ଶରୀର ।
ସେତେବେଳେ ମଧ୍ୟ ମତେ ଦୁଇ ଏବଂ ଦୁଇ ମିଶି ଚାରି
ବୋଲି କହିବାକୁ ହେବ । ମୁଁ ସତ୍ୟର ଖୁବ୍ ଦରକାର,
ସବୁବେଳେ, ମୁଁ କଣ ଚାହୁଁଛି ତାକୁ ? ବୋଧେ ବେଳେବେଳେ
ଗୋଟେ ଅଧେ ମିଛକଥା ମତେ ବେଶ୍ ଆରାମ ଦିଅନ୍ତେ ।
ଜଙ୍ଗଲ କୋଠରି ନୁହେଁ ସର୍ବାଧିକ ଶ୍ରେୟ ସବୁବେଳେ ।
ସେମାନେ କହନ୍ତୁ କିନ୍ତୁ ଭବିଷ୍ୟତମାନେ ମୋ ଦେଶର
ମୋ ହାତରେ ଅଛନ୍ତି ଓ ମାତା ପିତା ସବୁ ମୁଁ ତାଙ୍କର ।

ମୁଁ ଚାଲିଆସିଛି ଛାଡ଼ି ବହୁତ ଜିନିଷ; ପ୍ରଥମତଃ ଘର
(ବୈକୁଣ୍ଠ ସମାନ ଆହା ଅଟେ ସେହି ଘର), ଦ୍ୱିତୀୟତଃ
ବାପାଘର (ଭଲ ବୋଧେ ଲାଗିଥାନ୍ତା ବଉଳପାଟକୁ
ସାହା କରି ପିନ୍ଧି ଲଇଁ ଲଇଁ ଚାଲିଥିଲେ, ବା ପାତଳ
ହଳଦିଆ କାଗଜରେ ପଢ଼ୁଥିଲେ ଗୀତ ଯେ କାହିଁକି
ମଙ୍ଗଳ ବାଜଣା ବାଜେ, ବହେ ଚୈତ୍ର ଚଇତାଳ ଏବଂ
କୁହୁକୁହୁ ଗାଏ ପିକ, ହେ ବିଦେଶୀ ଆମର ଝିଅକୁ
ଚୈତ୍ର କଥାଁ କହିନଅ, ଯା ହେବାର ହେଲାଣି ଏଣିକି

ନବଦମ୍ପତିଙ୍କ ଶିରେ ତାଳ ପ୍ରଭୁ ତମ କୃପାବାରି) ;
ତୃତୀୟତଃ, ମାତୃତ୍ୱ (ମୁଁ ନୂଆ ନୂଆ ଡିଜାଇନ ଶିଖି
ଜାମା ପେଣ୍ଟ କରିଥାନ୍ତି ସୂକ୍ଷ୍ମ ଛୁଞ୍ଚିକାମରୁ ବି କିଛି) ;
ଚତୁର୍ଥତଃ, ପ୍ରେମ (ଏବଂ ସାଙ୍ଗ ହୋଇ ମେଳା ଦେଖିଯିବା)
ଏପରି ଅନେକ କିଛି ଆଦ୍ୟ ଯୌବନରୁ ଘୁଡ଼ିଅଛି ।
ସତ୍ୟର ବି ପ୍ରୟୋଜନ ଏ ଅବସ୍ଥା (ନିଃସ୍ୱାର୍ଥ ତ୍ୟାଗର)
ସୁତରାଂ ମୁଁ ହୁଏତ ଦୁଇ ଏବଂ ଦୁଇ ମିଶି ଗ୍ଦରି
କହିବାକୁ ଉପଯୁକ୍ତ—ଆଜି, କାଲି ବର୍ଷ ବର୍ଷ ଧରି ।

ବହୁତ ହଳଦୀବର୍ଣ୍ଣ ସକାଳ ଓ ଅସଂଖ୍ୟ ସଫେଦ୍
ଦ୍ୱିପ୍ରହର ଓ ବହୁତ ଅପରାହ୍ଣ ନାରଙ୍ଗ ରଙ୍ଗର
ଫୁଟିଛନ୍ତି ମୋ ବଗିଗ୍ଦରେ ନାନା ରଙ୍ଗ ଫୁଲ ପରି । ଏହି
ବଗିଗ୍ଦ ସୁନ୍ଦର ଜାଗା—ପରିଷ୍କାର, ନିସ୍ତବ୍ଧ, ଶୀତଳ ।
ମୁଁ ସୁତରାଂ ଏଠି ବସେ ଫୁରୁସତ୍‌ବେଳେ, ଭଲଲାଗେ
ନ କହି ଦେଖିବା ଲାଗି, ଆଖି ପଛେ ହେଉ ଛଳଛଳ ।
ସବୁଠାରୁ ଭଲଲାଗେ କାମଦାମ ସାରି ଖାଇଦେଇ
ହାତରନ୍ଧା ଖାଇବା ଓ ବଦଳାଇ ଲୁଗାପଟା
ପାନଖିଲେ ଖାଇ ଏକ ଚଉକିରେ ଏଠି ବସିବାକୁ ।
ଏ ବଗିଗ୍ଦ ପରିଷ୍କାର, ମାଟି ତାରି ବାରମ୍ବାର ଖୋଳି
ଖରାରେ ତା ଅନ୍ତ ପୋଡ଼ି, ପୋକଜୋକ ଓ ଚେରମୂଳ
ସବୁ ନଷ୍ଟ କରି ତାକୁ ମୁଁ ବସିବା ଲାଏକ୍ କରାଇ
ଏଠି ବସେ । ଆଉ କିଛି ଅର୍ଥ ନାହିଁ ଏଇ ବଗିଗ୍ଦରେ ।
ଋତୁ ବଦଳ ହୋଇଯିବା କମ୍ବା ଧୂଡ଼ ଧୂଡ଼ ଚମତ୍କାର
ଅସ୍ୱସ୍ତି ଲାଗିବ ନାହିଁ । ଏ ବଗିଗ୍ଦ ବଡ଼ ଚମତ୍କାର ।

ଏ ବଡ଼ିଗୁ ଚମତ୍କାର, ଯଦିଓ ତା’ ଭିତରେ ବସିଲେ
ରାତିସାରା ଜଣାଯିବ ମୁହୂର୍ତ୍ତକ ପରି ଏହି କଥା
ନିଶ୍ଚୟ ଅତିରଞ୍ଜନ । ସତକଥା କୁହାଯାଉ, ପ୍ରତି
ସେକେଣ୍ଡ ଏଠାରେ ଲାଗେ ମିନଟକ ପରି ଓ ପ୍ରତ୍ୟେକ
ମିନଟ୍ ଘଣ୍ଟାକ ପରି, ପ୍ରତି ଘଣ୍ଟା ବହୁତ ଶତାବ୍ଦୀ
ପରି ଲାଗେ, ମୋର ଗୋରା ଛଟପଟ ଦେହ ମିଶିଯାଏ
ଓଷଦଙ୍କ ଦୂର ବାସ୍ନା ସାଙ୍ଗେ ଏବଂ ଅଦୃଶ୍ୟ ଅନେକ
ଝିଙ୍କାରିଙ୍କ ଶବ୍ଦ ସାଙ୍ଗେ ଖୁବ୍ ବେଶି ଦୁଇଟି ଘଣ୍ଟାରେ ।
ମତେ କେତେ ବର୍ଷ ହେଲା ? ପନ୍ଦର ନାଁ ପଚିଶ ହୋଇଏ ?
ମୁଁ ଜାଣେନି; ମୁଁ କେବଳ ଦେଖୁଅଛି ଏକ ଅବାନ୍ତର
ଯୌବନ ମିଳାଇଯାଏ ଲକ୍ଷ୍ୟହୀନ ଏକ ବାର୍ଦ୍ଧକ୍ୟରେ
ଯେପରି କୌଣସି ଚଡ଼େଇ ସ୍ତନ ଏକ ଅବସ୍ଥ ନାରୀର
ଅଞ୍ଜୁଳୀରେ ଆଲୋକିତ ଝରକାର କାଚ ସାଙ୍ଗେ ମିଶେ
ଓ ତାହାର ପଛଆଡ଼ ମିଶିଯାଏ ଅପେଦ ପର୍ଦ୍ଦାରେ
ଯାହା ଝୁଲେ ଫୁଲ ଧୂଳି ପଶିଆସୁଥିବା ପବନରେ ।
ଏ ବଡ଼ିଗୁ ଚମତ୍କାର । ବେଳେ ବେଳେ ଭୁଲ ହୋଇଯାଏ
ଯେ ଅଙ୍କର ସତ୍ୟ ଖାଲି ଅଙ୍କପାଇଁ ସତ୍ୟ ଅଟେ । ବଦନେ
ନା ବଦନେ ମୁଁ ଦୁଇ ଏବଂ ଦୁଇ ମିଶି ଗୁଣ କହିବାରୁ
କ୍ଷାନ୍ତ ହେବ । ଏ ଜଘନ୍ୟ ମଧୁଚ୍ଛନ୍ଦା ବନ୍ଦ ହେବ ଏବଂ
ବନ୍ଦ ହେବ ଝାଳବୁହା, ବନ୍ଦ ହେବ ସବୁ କ୍ଳାନ୍ତି, ମୋର
ଗୋରା ଦେହେ ଲଜ୍ଜାକର କ୍ଷତଚିହ୍ନ ବନ୍ଦ ହେବ ବଦନେ ଅବା ବଦନେ
ଆକାଶକୁ ଝଲସାଇ ଫୁଟୁଥିବ ବାଣ ଓ ଦୂରରୁ
ଶୁଭିବ ବାଜଣା ଏକ ଆସ୍ତେ ଆସ୍ତେ ପାଖେଇ ଆସିବା

ଶୋଭାଯାତ୍ରାର ଓ ବହୁ ବହୁ ବହୁ ସନ୍ଧ୍ୟାଣିଆଙ୍କର
ହାଗ୍ ଖାନା ରନ୍ଧାହେବ, ମାଇପି ଓ ପିଲାଙ୍କ ଭିଡ଼ରେ
ପଢ଼ଆ ଗହଳ ହେବ, କେତେ ପିଲା ବଢ଼ାଇବେ ହାତ
ଓ ମାଗିବେ ରଙ୍ଗ ରଙ୍ଗ ବେଲୁନ ଓ ଅନେକ ରଙ୍ଗରେ
ଅଙ୍କା ଇନ୍ଦ୍ରଧନୁ ଦେଖି ଆଁ କରି କେତେକ ରହିବେ
ହିନେ ନା ହିନେ, ହୁଏତ ଆଜଠାରୁ ବହୁ ବର୍ଷ ପରେ ।
ମୋ ଦେଶର ଭବିଷ୍ୟତମାନେ କିନ୍ତୁ ଅଛନ୍ତି ହାତରେ
ତୁମର, ତେଣୁ ପଛେ ରଖି ଅତୀତକୁ ହୁଅ ଆଗଭର,
ଉତ୍ତିଷ୍ଠତ, ଜାଗ୍ରତ ଓ ସତ କଥା ମନେ ପଛେ ମର ।

ଆଗଭର ହୁଅ ହେ ମୋ କ୍ଳାନ୍ତ କ୍ଳାନ୍ତ ଆତ୍ମା ଆଗଭର
ହୁଅ ହେ ମୋ କ୍ଳାନ୍ତ ଆତ୍ମା ହସ ନାହିଁ କମ୍ବା କାନ୍ଦ ନାହିଁ
ଯଥେଷ୍ଟ ସମୟ ଅଛି ହସିବା ବା କାନ୍ଦିବା ଉଭୟ
କମ୍ବା ଯୁଗପତ୍ ହସ କମ୍ବା କାନ୍ଦ ଉଭୟରେ ସମସ୍ତ
ତଥାପି ରହିବ ଏବଂ ହେ ମୋ କ୍ଳାନ୍ତ ଆତ୍ମା କିଛି ବେଳ
ବଗିଚାରେ ରହିଯାଅ ଆଗଭର ହୋଇବା ପୂର୍ବରୁ ।
ଏ ବଗିଚା ଚମତ୍କାର । ଆରାମରେ ବସ ଗୋଡ଼ ରଖି
ଗୋଡ଼ରେ ଓ ଶୁଣ ଏବେ ଗୃହଆଡ଼େ କୋଳାହଳମୟ
ଆସୁଥିବା ଶୋଭାଯାତ୍ରା ବାଜଣାରେ ! ଏବେ ଦେଖ ଦିଶେ
ଶୋଭାଯାତ୍ରା ଏବଂ ତମେ ତା ସମ୍ମୁଖେ କି ସୁନ୍ଦର ବେଶେ !
ପିଲାମାନେ ମାଗୁଛନ୍ତି ରଙ୍ଗ ରଙ୍ଗ ବେଲୁନ୍ କେବଳ
ତାଙ୍କ ହାତମାନ କଣ୍ଠା । ଏ ଦୃଶ୍ୟ କି ଅପୂର୍ବ ଉଜ୍ଜ୍ୱଳ !
ଆଜ ସ୍କୁଲ ଛୁଟି ଆଜ ଶୋଭାଯାତ୍ରା ମାଷ୍ଟ୍ରାଣୀଙ୍କ ପାଇଁ
ଖଇ ଓ କଉଡ଼ି ପଡ଼େ, ସବୁ କିଛି ସରିଯାଇନାହିଁ ।

●

# ନଈ ମୁହାଣ

ସୀତାକାନ୍ତ ମହାପାତ୍ର

କାନ୍ଦନା ପାଗଳୀ ପରି, ମଥାପିଟି ବାଳ ମୁକୁଳେଇଁ
କଇଁ କଇଁ ହୋଇ ଆଜ କାନ୍ଦନା ଲୋ ବୋଉ ମୋର ।
ଅକରୁଣୀ ସମୁଦ୍ର । ସାକ୍ଷୀ ରଖି ଅନ୍ତରୀକ୍ଷ
ଗ୍ରହ, ତାରା, ନିସ୍ତବ୍ଧ ପବନ । ତୋ ବଣିକେଶନେ
ଏଇ ଫେରୁଅଛୁ ଲହରୀର ଦାଢ଼େ କାଟି
ବାଲି, ମାଟି ଯୋଜନ ଯୋଜନ ॥

ଅନ୍ଧାରର ଶୂନ୍ୟ ଆକାଶରେ ତୋର ଆଖି ଖୋସି
କାନ୍ଦନା ମୋ ମାଆ ପରି, ମେଲା ଦାଣ୍ଡଘରେ ବସି
ଏବୁଣ୍ଡିରେ ଆଣ୍ଠୁ ରଖି; ଧାପଚୁଖା ଉପରର
ପିଲସଜେ ଶତ ସ୍ମୃତି ମଲ୍ଲବତି ମିଛଟାରେ ଜାଳ
ତୋ ପୁଅ ଆସୁଛି ଫେରି, ପିଠିରେ ବୋକଗୁ ଆଉ
ହାତରେ ଲଣ୍ଠନ ଧରି ଲହରି-ଡଙ୍ଗାରେ ବସି
ଢଳକୁ ମୁହଁକୁ ପୋଛି ହାଟରୁ ବାହୁଡ଼ି ॥

ତୋର ନଷ୍ଟେ ଭସ୍ମ ହେଲା,
କାହା ବୋଲେ ଗଲା ପୁଅ ବାହୁଡ଼ି ନଇଲା
ଲୁହ ଆଉ ଦୀର୍ଘଶ୍ୱାସ ଦେବି ମୁଁ କାହାକୁ
ହଜଲା ଦରବ ଖୋଜ ମୋ ବଣିକେଶନେ ଗଲା

ସମତଳ ଭୂମି ଆଉ ନଗ୍ର, ଗ୍ରାମ,
ନଗ୍ଣଛିଆ ବଣ, ଝଲ, ମରୁଭୂମି, ପଥର ଗୁହାକୁ
ଆଉ ଏଠି ଗତ ଯାଇ ଆନ ହେଲା
ଆନ ଯାଇ ପୁଣି ହେଲା ଗତ
ଜାଆଁଙ୍କୁଳ ପରି କେବେ ହେମାନ ନକ୍ଷତ୍ର ସବୁ
ନିଭିଗଲେ ଶୂନ୍ୟତାର ଅଣ୍ଡା ଉହ୍ନେଇରେ
ମୋଟା କୁହୁଡ଼ି ସ୍ତରର ଜାକଜୁକ ଘୋଡ଼ହୋଇ
ଚମିମାଛ, ଶାମୁକା ଓ ଗେଣ୍ଡାଦଳ ଯାଂଚ କରେ
ପୁଣି କେବେ ଉଠେଦହେଲେ ଦେବ ଦବାକର
ଆଖିମଳ ବରକ୍ସରେ; ମହାସେଷଭରେ ॥

ଆଉ ତୋ ବଣିକେଶନ କ'ଣ ଅବା ଖୋଜୁଥିଲୁ ?
ଶବଦ ଓ ଅର୍ଥରୁ ଯେତେ କ୍ଷୀଣ ନଈକୂଳ,
ତା' ଭିତରେ ବାଳବନ୍ଧ,
ସାମାନ୍ୟ ସମ୍ପର୍କ ସ୍ଥାପି କାର୍ଯ୍ୟ କାରଣର
ସ୍ଥାନ ସାର ନିଜସ୍ୱ ଅନୁଭୂତିର ନିଭୃତ ନିଆଁରେ
(ଅବଶ୍ୟ ଯମଦେବତା ଏଣୁତେଣୁ ଗୁରେଇ-ତୁରେଇ
ନୂଆ ଓକିଲଙ୍କ ପରି ନାନା ଉପଲକ୍ଷ୍ୟ ଦେଇ
ମିଛଠାରେ ସ୍ଥେଟପିଲା, ସରଳବିଶ୍ୱାସୀ ସେଇ
ନଚିକେତା ଆଗେ
ସେଇ କଥା ବଖାଣିଲେ ବାରଆଡ଼୍ଡୁ ଫେଣେଇ ଫେଣେଇ)
କଥା, ଯାହା ଜନମ ଓ ମରଣର ଠିକ ପିଲାଖେଳ,
ହାଲୁକା ହେଲେ ଦେହମନ ଆକାଶକୁ ବାଂଫ ଦେଇ
ଉଡିଯାଏ । ସାଇଁ ସାଇଁ ଘୁଣ୍ଟବୁଲି ଏଣେତେଣେ

ଘଗାବଂଢ଼ ପରି, ଦୁଣି କେବେ ପାହାଡ଼ରେ ମାଡ଼ ଖାଇ
ଚଳେ ପଡ଼ ବାଲଶେଯ ଶୁଏ ॥

ସବୁ ଚେଣ୍ଟୁ ନିଜ ପାଣି (ଯଦ୍ଦ ବା ସେ ପାଣି ହୁଏ ସଂଜ୍ଞାଭେଦେ
ଅନ୍ୟ ଲୋକ ପାଣି) । ସବୁ ପାଣି ଜ୍ୱଳନରେ ହୁତାଶନେ
ଅଶ୍ରୁ ପ୍ଲାବନର ମିଶାମିଶି ପ୍ରତିରୂପ
ବସ୍ତୁ ଓ ଘଟନାହୀନ ଅନ୍ଧାରର ସ୍ତୂପ ।
ସମସ୍ତ ମୁହୂର୍ତ୍ତ ସଦା ବର୍ତ୍ତମାନ, ମୁକ୍ତିହୀନ ଘନ ଅନ୍ଧକୂପ ॥

ଚେଣ୍ଟୁ ଯେତେ ଗଲା କାଲି
ସବୁ ସ୍ମୃତି ଆଜ ଦିନଟିର
ସମସ୍ତ ଅସନ୍ତା କାଲି ଆଜିଟିର ସମ୍ଭାର ॥
ଚେଣ୍ଟୁ ମୃତ୍ୟୁ କିଛି ନୁହେଁ
କେଣ୍ ଖାଲି ପବନରେ ଫୁଙ୍ଗୁଳା ଦେହରେ ଚମେ ଛୁଡ଼ାହୁଅ
ଏବଂ ଏବେଚେବେ ଘରି ମିଶିଯାଅ ମାଳମାରି ଘଞ୍ଚ ବସ୍ତିରେ
କମ୍ବା ଧୀରେ ଧୀରେ ଯାଅ କରକା ପରି ମିଳେଇ
ନଃଶବ୍ଦେ, ଚକଚକ ସୂର୍ଯ୍ୟକରଣେରେ ॥
(ଯ୍ୟ...ସୂକରଣରେ ॥)

ବୋକଗୃରେ ଏଇମିତି ଅର୍ଥହୀନ, ଅଭିଜ୍ଞାନ, ମୋଟା ଭାଷ୍ୟ
ସିଲ୍କର୍, ବସ୍ତାନ, ଖଡ଼, ଦିଆସିଲ, ପନକଣ୍ଡି ମାଳ
ଅଜ ମୋର ମନେପଡ଼େ, ହସ ଲାଗେ
ଯୋଉ ଦିନ ବେତର ଡରେ ଘୋଷିଲି
କୁକ୍କୁଟ ମୁଣ୍ଡେ ଅଛି ଚୂଳ
ମାଟି ଭିତରେ ବୃକ୍ଷମୂଳ ॥

ଯୋଜନ ଯୋଜନ ଧରି ଝଙ୍କାର
ଲୁହା ଆଉ ପଥରଠୁ ଝାଣ
ଦେଢ଼ଫୁଟ ବ୍ୟାସାର୍ଦ୍ଧରେ ଜକଜକ ଏ ଆଲୁଅ
ନଭଲ କ ନନଭଲ ତୋ ପୁଅ ଲଣ୍ଡନ,
ତରଙ୍ଗ ଡଙ୍ଗାରେ ଏଠି ମୁମୂର୍ଷୁ ଯେତେ ପଝାର
ମୁଷାମାଟି ଶଣଶଣ ମଙ୍ଗଡଳେ ଛୁପି ଶୋଇଛନ୍ତି
ମହର୍ଷି ଗୃବାକ୍ ଏବଂ ବୁଦ୍ଧଦେବ, ଯିଶୁଖ୍ରୀଷ୍ଟ
ଭଲକରି ଦେଖ ମୋର ଭ୍ରାତାଙ୍କ ବଦନ ॥

ବୋଉଲେ ତୁ ଭଲକଲୁ ଖୋସୁର ନଜ ପେଟେ ରଖି
ଚାରି ବେଦ ବୁକୁମୂଳେ ବ୍ରହ୍ମା ଯାହା ବାନ୍ଧ ବୁଲୁଥିଲେ
ଠିକ୍ ଏଇ ମୋର ପରି, କସ୍ଷ୍ଟାଣ୍ଡ ଫେରିବାଲି ପରି
ଗଳା ସରୁ ମୋଟ କରି ରଡ଼ ରଡ଼
ପାନଆ, ସିନ୍ଦୂର, ଫିତା, ଦାନ୍ତଖୁଣ୍ଟା, ଅମର ଜୁମ୍ପିର
ସେଥିରୁ ମିଳିଲା ମୁକ୍ତି
ଜକଜକ ଆଲୁଅ ଓ ଜାଙ୍ଗୁଲୁ ଜାଙ୍ଗୁଲୁ ଯେତେ
ବୁଢ଼ିଆଣୀ ଜାଲ ପରି ଅଁମୃକ୍ଷନ ବେଦନାରୁ
ସାହା କରେ ଯେଉଁଥିରୁ
ତୋ ମାଁ-ସେନେହ, ଘନ ଆତ୍ମୀୟ ଝଙ୍କାର ॥

ଆଜ ତେଣୁ ଏବେ ମୋର ସ୍ମୃତି ଆଉ ସପନର ଅସଂଖ୍ୟ ସରଣୀ
ବସ୍ତୁ ନାମଧାମ ଆଉ ଘଟଣା ଓ ଦେଶ କାଳ ପାତ୍ର
ଘାଟଡଙ୍ଗା, ବେଳ ଯେବେ ରତରତ, ଆହୁଲି ଓ ମାଝିଗୀତ
ବାଲିଖେଳ, ଦପଦାନ, ଭଙ୍ଗାକାଚ, ଛିଣ୍ଡା କନ୍ଥା
ଅନେକ କାହାଣୀ

ଅନେକ ମୃତ ପୃଥିବୀ । ମୃତ ସବୁ ସଂମ୍ବ ଓ ଭ୍ରୁଣକ
ନିର୍ବାପିତ ବହ୍ନ ସ୍ମୃତି, ସ୍ୱପ୍ନ ସବୁ ଯିଏ ମଲେ
ମୁହୂର୍ତ୍ତର ସିଂହାସନ ନ ହେଉଣୁ କ୍ଳାନ୍ତ ଅଭିଷେକ ॥

ଏଠି ତେଣୁ ଭଲଲାଗେ ଝାଉଁଗଛ ଅସ୍ପଷ୍ଟ କାନ୍ଦଣା
ଫାଟଳ କୁହୁଡ଼ି ସିଢ଼ି ଫଳକରେ ପାଦ ପକେଇ
ସଞ୍ଜ ଯେବେ ଓହ୍ଲାଉଛି ଆକାଶରୁ ହୋଇ ବାଟବଣା,
ଏଠି ଆଜ ଭଲଲାଗେ ଫାଲସ୍, ମସୃଣ ଏଇ କାଦୁଅରେ ·
ଛୋପା ଧଳା ଓ ଧୂସର ପକ୍ଷୀର ମୁରୁଜ
ଜୁଆର ଯାଉଛି ଗୁଡ଼ି
ଗୁଡ଼ିଦେଇ ଶାମୁକା ଗେଣ୍ଡାମାନଙ୍କୁ ବାଲିପଙ୍କ ହତାଶାରେ
ଆକାଶରେ ବଉଦର ନାନାଜାତି ରଙ୍ଗ ଓ ପଶ୍ୱଜ ॥

ବାସ୍ ଆଉ ଟିକକରେ ଲୁଣିପାଣିଧୂଆ ଏଇ ଶିଉଳି ଓ କାଦୁଅରେ
ତାରସବୁ ବାଂଷ୍ପ ହୋଇଯିବେ
ଭଙ୍ଗିଯିବ ଗୁଆଁର ଓ ବନ ଡାଳେ ପକ୍ଷୀଙ୍କର ହାଟ
ବାଂଷ୍ପ ହୋଇ ହଜିଯିବ ଲଣ୍ଡନର ମୁମୂର୍ଷୁ ଆଲୁଅ ଆଉ
ପନକର୍ଣ୍ଣି, ଚକ୍‌ଖଣ୍ଡ୍, ଦଆପିଲ, ବସ୍ତାନ, ସିଲଟ୍ ।
ବୋଉଲେ କାନ୍ଦନା ଆଉ ଅଛୁଣ୍ଡା ଅଙ୍କ ପ୍ରଶ୍ନର
ଆଶା ରଖି ମିଛେ ଉତ୍ତରର । କଇଁକଇଁ ହେଇ ଆଉ
କାନ୍ଦନା ପାଗଳୀ ମୋର ଅନ୍ଧୁଣୀ ସମୁଦ୍ର
ସାକ୍ଷୀ ରଖି ନୀରବ ଏ ଅନ୍ତରୀକ୍ଷ, ଗ୍ରହ, ତାରା ଅଥବା ପବନ
ତୋ ବଶିକେଶନ ଏଇ ଲେଉଟାଣି ଆସୁଛି ଘରକୁ
ତୋ ପାଇଁ ଉତ୍ତର ଖୋଜ, ହାଟସାର ବୁଲି ବୁଲି
ବାଲି ଓ ଅଙ୍ଗାର ଡେଇଁ ଯୋଜନ ଯୋଜନ ॥



# ଗୋଟିଏ ନିବେଦନ

ବ୍ରଜନାଥ ରଥ

ବିଂଶ ଶତାବ୍ଦୀର ହେ ବୁଦ୍ଧିଜୀବୀମାନେ !
ତୁମେ ତୁମର
ଜ୍ୱଳନ୍ତ ହୃଦୟ
ଭାରାକ୍ରାନ୍ତ ମନ
ଓ ବିପର୍ଯ୍ୟସ୍ତ ବିବେକକୁ ନେଇ
ମାତ୍ର ଅଳ୍ପ କେତୋଟି ମିନିଟ୍ ପାଇଁ
ଶରତ୍‌ର ଏଇ ନୀଳ ପ୍ରାନ୍ତର ଉପରକୁ ଆସ ।
ଖୁବ୍ ଦୂର ଆକାଶରେ
ସାନ ସାନ ପିଲାଙ୍କର
ଛୋଟ ଛୋଟ କୌତୂହଳୀ ଆଖିଭଳି
ତାରାଗୁଡ଼ିଏ ମିଟିମିଟି କରି
ପୃଥିବୀ ଆଡ଼କୁ ଅନାଇଛନ୍ତି,
ସେମାନଙ୍କୁ ଟିକିଏ ଦେଖ ।

ଝିଙ୍କାରିଗୁଡ଼ାକ
ଘାସର ଟେବୁଲ ଉପରେ ବସି
ଗୁଣୁଗୁଣୁ ଶବ୍ଦ କରି
ଅତି ବେପରୱା ଭାବରେ
ଗୀତ ଗାଉଛନ୍ତି;

ସେମାନଙ୍କର ସେହି ଗୀତକୁ ଟିକିଏ ଶୁଣ,
ଆଉ, ଯଦି ପାର
ସେମାନଙ୍କ ସହିତ ଟିକିଏ ମନଖୋଲି
ଖୁସିଗପ ବି କର ।
ତା'ପରେ ମୋ କଥା ମାନି
ତୁମର ମନକୁ
ଗୁଡ଼ାଏ ଝିଲମିଲ ରଙ୍ଗୀନ ପ୍ରଜାପତି କରି
ଉଡ଼ାଇ ଦିଅ ।

ତୁମର ହୃଦୟକୁ
ଗୁଡ଼ାଏ ମଖମଲ ସତେଜ ଫୁଲ କରି
ଫୁଟାଇ ଦିଅ ।
ଆଉ ନିଜେ
ଛୋଟ ପିଲାଟିଏ ଭଳି
ସେହି ଉଡ଼ନ୍ତା ପ୍ରଜାପତିଗୁଡ଼ିକୁ
ଧରିବା ପାଇଁ
ସେହି ଫୁଟନ୍ତ ଫୁଲଗୁଡ଼ିକୁ
ତୋଳିବା ପାଇଁ
ଟଳଟଳ ପାଦରେ
ଚାଲି ଚାଲି ଘୂରିବୁଲ ।

ତା'ପରେ ଦେଖିବ
ପୃଥିବୀକୁ 'ବସନ୍ତ' ଆସିବାକୁ
ଖୁବ୍ ବେଶି ଡେରି ନାହିଁ ।



# ଦ୍ୱି ପ୍ରହର

ସୌଭାଗ୍ୟକୁମାର ମିଶ୍ର

ନଣ୍ଡହୁଡ଼ା ବରଗଛ ଚସଖଡ଼ା ଧୂଣ୍ଟା ଡାଳେ ଡାଳେ,
ବାଦୁଡ଼ିର ଚେଁ-ଚ୍ଁ, କପୋତର କରୁଣ କଣ୍ଠର
ଦ୍ୱି ପ୍ରହର ନଇଁଆସେ ପ୍ରାଣାନ୍ତକ ବେଦନା ବଳକେ,
ଅଜାଡ଼ ଉତ୍ତପ୍ତ ଲକ୍ଷ କୁଆଁଡର ସମାଧି ଉପରେ ।

ବଉଦାଣ୍ଡ ଶୂନ୍ୟ ହୁଏ, ଏ ଆକାଶ ଢୁଳାଏ ନଦରେ
ସ୍ୱାଭାବିକ ଚେତନାରେ ପ୍ରାଣ ମୋର ସହ୍ୟ କରିଯାଏ,
କଥାଁ ଗୁଣ୍ଠ ବାଜେ ଯେତେ ଜୀବନର ଗୃହଶାଳୀ ଘରେ
ସୁଦୀର୍ଘ ଭବିଷ୍ୟ ଲଗି ଚହ୍ନ ରଖି ହାତରେ ପିଠିରେ ।

ଦୋକାନ ବଜାର ବନ୍ଦ, ବନ୍ଦ ସବୁ ସିନେମାର ଘର,
ମଉଳେ କାଗଜଫୁଲ ଓ ଇଂଲୁମ ଝରକା ଉପରେ,
ମଇଳା ନର୍ଗିସ ଛବି, ବଜେଗୃହରେ ଶୁଖିଲା ଜହ୍ନଆ,
ମୁଠା ମୁଠା ପାଉଁଶ କେ ବିଂଚୁଦିଏ ଆକାଶର
ଏ କୂଳେ ସେ କୂଳେ ।

ଜୋଛନା କାହିଁରେ କାହିଁ, କାହିଁ ମୋର ଚଇତର ରାତି
ବଂଶୀର ସୁର କାହିଁ, ଯମୁନାର ନୀଳ ନୀର କାହିଁ ?
ସ୍ୱଧାର କଳସେ ମୋର ମାଟି ଗୋଡ଼ି, ଲୁହା ଓ ଖପର;
ଅସମ୍ଭବ ଦୂରତାରେ ଉପହାସ କରେ ଯେତେ ଗ୍ଲଇ ।

ଆଲିଜା ଗଛର ପତ୍ରେ ଜୀବନର ରଙ୍ଗ ଯାଏ ଧୋଇ,
ଦ୍ୱିପ୍ରହର ହଟବାକ୍, ଚୁପ୍‌ଚୁପ୍ ପୃଥିବୀର ଗ୍ଳାନି
ମୋର ଆଜି ମନେହୁଏଁ ଏପ୍ରିଲ୍‌ର ଏଇ ଦ୍ୱିପ୍ରହରେ
ପୋଡ଼-ଜଳଯାଏ ଯେତେ ବୁଦ୍ଧ ଆଜି ଅଶୋକର ସ୍ମୃତି ।

ଆମର ଏ ପୃଥିବୀରେ ଶତ ଶତ ତପ୍ତ ଦ୍ୱିପ୍ରହର
ଶୋଷିନିଏ ଜୀବନରୁ ଯେତେ ଆଶା ହସର ଉଚ୍ଛ୍ୱାସ,
ତେଣୁ ଆଜି ସଂଜବେଳେ ଦେଖାଯିବ ସମୁଦ୍ରକୂଳରେ
ସମସ୍ତ ଜୀବନ ରଂଗେ ହସୁଥିବ ପଶ୍ଚିମ ଆକାଶ ।



# ଲୁଲୁପାଇଁ ଏକ ଲଲାବାଏ୍ଁ

ନୃସିଂହକୁମାର ରଥ

ମୋ ଲୁଲୁ ପଡ଼ ରେ ଶୋଇ ମାଡ଼ିଆସେ ଘନ ଘୋର ରାତି
ଝଡ଼ର ଇଗଲ ଏଇ ମାଡିଅଛି ପ୍ରଳୟ ଆହବେ
ପବନରେ ସନ୍ଦେହ ଓ ସର୍ବଗ୍ରାସୀ ମରଣର ଭୟ
ମୋ ଲୁଲୁ ପଡ଼ ରେ ଶୋଇ; ବାଜିଲାଣି ଘଣ୍ଟାରେ ଏଗାର ।।

ଏଠାରେ ଏବେ ରେ ସବୁ ପରିମିତ ସବୁ ତ ସୀମିତ
ସରଳ, ନିଷ୍ପାପ ତୁ ରେ କମିତି ବୁଝିବୁ କହ କମିତି ବୁଝିବୁ !
ଆମେ ସବୁ କଳୁଷିତ, ଆମେ ସବୁ ଭଗ୍ନ ମନ୍ଦିରରେ
କେବଳ ହିଁ ନିର୍ଯାତିତ ଅସହାୟ ନିର୍ବାସିତ ପ୍ରାଣ ।।

ଗ୍ରହ, ଅନ୍ତରୀକ୍ଷ ଯାତ୍ରା ସତ୍ତ୍ୱେ ଆମ ନିମ୍ନଗାମୀ ମନ
ଆମକୁ ନପାରେ ଛାଡ଼ି ଅବିଶ୍ୱାସ, ସଂଘର୍ଷରେ ଆମେ
ସମସ୍ତେ ଜର୍ଜର ଖାଲି, ବିଖଣ୍ଡିତ ସମୟରେ ବହୁଧା ବିଭକ୍ତ
ମୃତ ଅତୀତରେ ଆମ ଲକ୍ଷ୍ୟ ଭ୍ରଷ୍ଟ, ଆଗାମୀ ଦିନର ।।

ତେଣୁ ସବୁ ନିଶ୍ଚେଷ୍ଟତା, ଦ୍ୱିଧା, ଆଉ ଦ୍ୱନ୍ଦ୍ୱ ଓ ସଙ୍କଟ
ଭିତରେ ଆମର ସ୍ଥିତି, ଶୋଇପଡ଼ ଅବୁଝା ଦୁଅନ
ତୋ ପୃଥିବୀ ଭିନ୍ନ ହେଉ ଆମଠାରୁ; ଶାନ୍ତ ସମାହିତ
ତୋ ପାଇଁ ଜୀବନ ହେଉ ହାହୁତାଶ ବ୍ୟର୍ଥତାରୁ ମୁକ୍ତ ।।

ଅମୃତର ଶିଶୁ ତୁ ଯେ ଅମୃତର କର ଅନ୍ୱେଷଣ
ତୋ ପୃଥିବୀ ଭରିଉଠୁ ସ୍ନେହ, ପ୍ରେମ, ପ୍ରତ୍ୟୟ, ପ୍ରୀତିରେ
ପଶୁତ୍ୱର ମୃତ୍ୟୁ ହେଉ, ତୋ ସକଳ ସୃଷ୍ଟିର ସୌନ୍ଦର୍ଯ୍ୟ
ନିର୍ଣ୍ଣିତ ଆଶ୍ରୟ ହେଉ ବଞ୍ଚିବାର ତୀବ୍ର ଉନ୍ମାଦନା ॥

ତୋ ପାଇଁ ସମସ୍ତ ହେଉ ପରିକ୍ୟାପ୍ତ କାଳ, ମହାକାଳ
ହମବର୍ଦ୍ଧମାନ ହେଉ ଜୀବନର ପ୍ରତିଟି ଅଧ୍ୟାୟ
ସୁଦୂରପ୍ରସାରୀ ଦୃଷ୍ଟି, ପରିପୂର୍ଣ୍ଣ ସମ୍ଭାବନା ଯେତେ
ତୋତେ ରେ ବିଚ୍ଛିନ୍ନ କରୁ ଘୃଣ୍ୟ ଆତ୍ମକେନ୍ଦ୍ରିକ ଚକ୍ରାନ୍ତୁ ॥

ଆଗାମୀର ବାର୍ତ୍ତାବହ ମୋ ଲୁଲୁର ଆଖିରେ ଆଖିରେ
କେତେ ଯେ ସପନ ବୋଳି ନିଦ ଏଇ ଆସିଲାଣି ଘାରି
ମୋ କୁନି ପଡ଼ରେ ଶୋଇ ଗୁରିଆଡ଼େ ଶୂନ୍‌ଶାନ ରାତି
ଗୁରିଆଡ଼େ ଅନ୍ଧକାର, ଅର୍ଦ୍ଧରାତ୍ରି; ତୋ ସକାଳ ଆସିବାକୁ ଡେରି ॥



## ଭୁଲ୍

ସୁଦକ୍ଷିଣା ମହାନ୍ତି

ବେଳେ ବେଳେ ପଥ ଭୁଲୁ ଆମେମାନେ ଜୀବନଯାତ୍ରାସ୍ଥଳର
ସିଧା ରାସ୍ତା ଛାଡ଼ି, ମାତ୍ର ଏ ଛାଡ଼ିବା କେତେ ଶ୍ରେୟସ୍କର,
କେତେ ବେଶି ଲାଭପ୍ରଦ ଅନୁଭବୀ ବିନା ଆନ ବୁଝିବ ବା କିଏ ?
ସମସ୍ତେ କହିବେ, ଆହା ଜୀବନରେ ମସ୍ତବଡ଼ ଦାଗ ରହିଗଲା;

ଭୁଲକୁ ଯେତିକି ଜାଣେ ଆଲୋକେ ବା ଅନ୍ଧାରେ ତା' ସ୍ଥିତି,
ନିଃସଙ୍କୋଚେ ପ୍ରଶସ୍ତି ତା' ଗାଇବାକୁ ଇଚ୍ଛା ହୁଏ ଘର,
ବହୁ ଭୁଲ୍ ପରେ ଏହି ସଂଶୋଧିତ ସମାଜକୁ ଆମେ ତ ପାଇଛୁ
ଅନାବିଷ୍କୃତ ବି ରହିଥିବେ ବହୁ ଭ୍ରାନ୍ତ ନିର୍ଭୁଲ ବୋଲି
ଯା' ଆମେ ଆଜଯାଏ କରିଛୁ ଗ୍ରହଣ
ଆବିଷ୍କାର ପରେ ଯା'ର ବର୍ତ୍ତମାନଠାରୁ ହେବ ସ୍ଥିତି ଆମ
ଶୁଭ୍ର ସ୍ୱଚ୍ଛତର,

ଭୁଲ୍‌ର ଏ ସବୁ ସିନା ପରକଥା ସଂଶୋଧିତ ଆକାର ପ୍ରକାର,
ନିଛକ ଭୁଲ୍‌ଟା ସତେ କେତେ ବେଶି ଉତ୍ତେଜନାପ୍ରଦ,
ସ୍ଥାୟିତ୍ୱ ଅବଶ୍ୟ ତାର ଦୀର୍ଘ ବା ସଂକ୍ଷିପ୍ତ ଶୁଦ୍ଧ ବିଚାରସାପେକ୍ଷ,
କିନ୍ତୁ ସେଇ ମୁହୂର୍ତ୍ତର ସ୍ପନ୍ଦନ କି ଅନିର୍ବଚନୀୟ ।

ଏ ସତ୍ୟରେ ବୁଝିବାକୁ ଗୋଟେ ଅଧେ ଦୃଷ୍ଟାନ୍ତ ମୁଁ ଦିଏ,
ପିଲାଦିନେ ଜହ୍ନମାମୁ ପରବର୍ତ୍ତୀ ବୟସରେ ହାସ୍ୟାସ୍ପଦ କଥା

କିନ୍ତୁ ସେ ସ୍ମୃତିକୁ ଥରେ ଘାଣ୍ଟି ଦେଖ କେତେ ବେଶି
ଆନନ୍ଦ ନଥିଲା,
ଜହ୍ନକୁ ଚହ୍ଲିବା ପରେ ଉଲ୍ଲାସ ସେ ଆତ୍ମହତ୍ୟା କଲା ।।

ଏଇ ନଅ କୈଶୋରର କେଉଁ ଏକ ଚପଳ ମୁହୂର୍ତ୍ତ
ହୃଦ ବନମସ୍ତ ଛନ୍ଦେ ଅଙ୍ଗେ ଅଙ୍ଗେ ଅପୂର୍ବ ଶୀତ୍କାର
କେତେ ବେଶି ଉତ୍ତେଜକ, ପ୍ରତି ସ୍ନାୟୁ ଅନ୍ତରାଳେ ବୀଣାର ଝଙ୍କୃତ,
ଅଣ୍ଡା ରକ୍ତ ବୟସରେ ସେ ସବୁ ତ ଲଜ୍ଜାପ୍ରଦ ସ୍ମୃତି ।

ଅନେକ ଭୁଲ୍‌ର ପରେ ଅବଶ୍ୟରୁ ପୁନର୍ବାର ଭୁଲ୍ କରହୁଏ,
'ରାଧିକା' ସେଦିନ ଯେବେ ମା' ପାଖେ ଫିଟାଇ କହିଲା
ଟିଉଟର ଶ୍ୟାମକୁ ସେ ଭଲପାଏ, ସାଥେ ତାର ପରିଣୟ
ପ୍ରୟୋଜନ ତେଣୁ
ସେ ଭକ୍ତିରେ କି ରୁଦ୍ରଝଡ଼ ପରିବାରେ, ଅସମ୍ଭବ ଅସ୍ୱୀକୃତ ଯେଣୁ
ଜାତିଗତ ବ୍ୟବଧାନ; କାନ୍ଦି କାନ୍ଦି ଦୁହିତା ବରଷ
କେତେ ନ କହିଲା ଅଳି, ଅଳି ତାର କିଏ ବା ଶୁଣିଲା ?
କେହି କି ଚିହ୍ନିଲା ଥରେ ଅନୁନୟ ବ୍ୟାକୁଳତା ଏତେ
ତାର କାହିଁକି, କାହିଁକି ?
ନଦୀବକ୍ଷେ ଅକସ୍ମାତ୍ ପ୍ରତ୍ୟୁଷରୁ ଦିନେ ଦେଖାଗଲା
ଶ୍ୟାମରାଧା ମୃତଦେହ ଆଲିଙ୍ଗନେ, କ୍ଷୁଦ୍ରାଳାପି ଲୁହର କବିତା
ଜୀବନେ ଯା' ଅସମ୍ଭବ ମରଣେ ତା' ଅନାୟାସେ
ସମ୍ଭବ କି ନୁହେଁ ?
ଶବ ବ୍ୟବଚ୍ଛେଦ ପରେ ଜଣାଗଲା ହତଭାଗୀ ଅନ୍ତଃସତ୍ତ୍ୱା ଥିଲା ।
ଭୁଲ୍ କିନ କିସମର ମୋ' ବୟସରେ, ଇଚ୍ଛାକୃତ, ଅଜ୍ଞାତସାରରେ

ପରିସ୍ଥିତି ପୀଡ଼ନରେ ମର୍ମବାଦ ଅନିଚ୍ଛା ସତ୍ତ୍ୱେ ବି,
ଏ ସବୁ ଭ୍ରମରୁ କିନ୍ତୁ ବହୁକିଛି ଶିଖିବାର ଅଛି,
ନିଜକୁ ବି ମାପିହୁଏ' ଅନୁତାପେ ଶୁଦ୍ଧ କରିହୁଏ
ଚୈତନ୍ୟକୁ ଦୃଷ୍ଟି ଲମ୍ବେ ସତର୍କତା ଅବଲମ୍ବନରେ ।

ସେ ଏକ ଗୋଷ୍ଠୀର ଧର୍ମ ଭୁଲ୍ ଟା ବିଳାସ ଯା'ର ସ୍ୱାର୍ଥସିଦ୍ଧି ଲାଗି
ଚୈତନ୍ୟ ଉଦୟୁ ଅବା ଅନୁତାପେ ଦଗ୍ଧ ଶୁଦ୍ଧ ହେବା
ଆକାଶର ଫୁଲ ଖାଲି, କିନ୍ତୁ ପ୍ରତିକ୍ରିୟାର ଯେ ପ୍ରତିକ୍ରିୟା ଅଛି
ସେମାନେ ବୁଝନ୍ତି ତେବେ ଧକ୍କା ମାରି ନିରୁଦ୍‌ବେଗେ
ଆଗେଇଲାବେଳେ
ଅକସ୍ମାତ୍ ବିପର୍ଯ୍ୟସ୍ତ ପଥ ରୋକେ ଏତେ ବେଶି ସତର୍କତା
ଦୂରଦୃଷ୍ଟି ସତ୍ତ୍ୱେ ।

ଅଜ୍ଞାତସାରରେ ବହୁ ଭୁଲ୍ କିନ୍ତୁ ଆଶୀର୍ବାଦ ହୁଏ,
ବ୍ରହ୍ମପୁର ଟୁର୍ ଅଛି, ଟ୍ରେନେ ବସି ରାମବାବୁ
ନିଜ ଭ୍ରମ କଲେ ଆବିଷ୍କାର
ଜରୁରୀ ଫାଇଲ ଯେତେ ଘରେ ସବୁ ଛାଡ଼ିଆସିଛନ୍ତି,
ବାହୁଡ଼ିଲେ ଗୃହେ, ପରେ ଯାତ୍ରା ପୁଣି, ଘରେ କିନ୍ତୁ ପହଞ୍ଚି ହଠାତ୍
ଆତଙ୍କେ ସେ ସ୍ତବ୍ଧ ହେଲେ, ପତ୍ନୀ ପଡ଼ି ଦୋତାଲାର
ପାହାଚ ଉପରୁ
ହତଜ୍ଞାନ, ଅନ୍ୟ କେହି ସେତେବେଳେ ଘରେ ବି ନାହାନ୍ତି ।
ବିଶ୍ୱରେ ସେ କେନ୍ଦ୍ରୀଭୂତ ଉଚିତ କି ହେଲା ଏତେ
ଭୁଲ୍ ଟାକୁ ଭର୍ତ୍ସନା କରିବା ?

ଆର୍ଥିକ ଦୁର୍ଗତି ଆଜ ପରିସ୍ଥିତି ବାଧ କରେ ବନ୍ଧୁ ଭୁଲ୍ ଅସଙ୍ଗତି
ଅସହାୟେ ମଥାପୋତି ମୀରବରେ ସହ୍ୟ କରିବାକୁ ।
ଆମସାହୁ ପ୍ରିୟନାଥ କେତେ ବେଶୀ ଗରିବ ମୁଁ ଜାଣେ
ପିତୃଭକ୍ତ ଭାରି ବୃଦ୍ଧ ଜନକଙ୍କ ଅନ୍ତିମ କାମନା
ମୋକ୍ଷକାମୀ ତ୍ରିବେଣୀରେ ଆପଣାର ଅସ୍ଥି ବିସର୍ଜନ
ଚରମ ଦାରିଦ୍ର୍ୟ ସତ୍ତ୍ୱେ କଷ୍ଟେ ସଞ୍ଚ କରୁ କରୁ
ଦିନେ ଯାତ୍ରା ଆରମ୍ଭିଲ ହାତେ ଧରି ନିର୍ଦ୍ଦିଷ୍ଟ ପୁଞ୍ଜିକୁ ।
ପ୍ରୟାଗେ ପହଞ୍ଚି କିନ୍ତୁ ହତବମ୍ଭ, ବିସ୍ମୟେ ଅବାକ୍
ଅସ୍ଥି ଯେ ଆସିଛି ଛାଡ଼ି ହାୟ ହାୟ ଉପାୟ କି ଏବେ ?
ଏ ଭୁଲ୍‌ର ଏକମାତ୍ର ପ୍ରତିକାର ଲେଉଟି ଘରକୁ
ଅସ୍ଥି ନେଇ ପୁନଶ୍ଚ ଫେରିବା, ଚିନ୍ତା ତାର ପଥଭ୍ରଷ୍ଟ ହୁଏ ।
ବିପ୍ରତେ ସାନ୍ତ୍ୱନା ଦେଲେ ପୁରୋହିତ, ବିସର୍ଜନ କ୍ରିୟା
ମନ୍ତ୍ରୋଚ୍ଚରେ ଶେଷ ହେଉ, ଗୃହେ ଫେରି ଯେକୌଣସି
ନଦୀଜଳେ ଅସ୍ଥି ଦେଲେ ଆଉ କିଛୁ ନ୍ରୁଟି ରହିବନି,
ଆତୁରେ ନିୟମ ନାସ୍ତି ଶାସ୍ତ୍ରବାକ୍ୟ ସଂଗତ ଏ କ୍ଷେତ୍ରେ ।"
ପ୍ରିୟନାଥ ମାନନେଲା ବିନା ପ୍ରତିବାଦେ ସେଇ ବିକଳ୍ପ ପନ୍ଥାକୁ,
ଏ ସ୍ୱୀକୃତ ଆଉ ଆଣେ ପିତୃଭକ୍ତ ଐକାନ୍ତିକତାରେ ?
ଭୁଲ୍‌ର ଶୋଧନ କାହିଁ ? ଭୁଲ୍ ଲାଗି ଭୁଲ୍‌ର ଆବୃତ୍ତି ।

ପୃଥିବୀର ଭୁଲ୍ ଯେତେ—ରଂଗ ଯେତେ, ସେତେ
ଆଉ ବୈଚିତ୍ର୍ୟ ତାହାର
ବିଶ୍ଳେଷଣ କରି କରି ଯେତେ ବେଶି ଦେଖିବା ନିଖାରି
ସେତିକ ବିସ୍ମିତ ହେବା, ସୀମା ନାହିଁ ଆଦିଅନ୍ତ ନାହିଁ
ବିସ୍ତୃତ ଆକାଶସମ; ଅନ୍ତରାଳେ ଆଶ୍ଚର୍ଯ୍ୟ ମନର

ସ୍ମୃତି ମାସ ବ୍ୟୋମରେ ଭିନ୍ନ ଭିନ୍ନ ସୂର୍ଯ୍ୟର ରଂଗରେ
ମନର ବୈଚିତ୍ରେ ତଥା ଭୁଲ୍ ମାନ ବସେ ବସେ ।
ସାଗରର ଢେଉ କଣ ଗଣିହୁଏ ? ଗଣୁ ଗଣୁ ତରଂଗମାନଙ୍କୁ
ସମୁଦ୍ରକୁ ଚିହ୍ନିହୁଏ, ଏ ଚିହ୍ନିବା ସ୍ରୋସ୍ୱର ସେଣୁ
ଲୁଣିପାଣି ରହିବାକ ସବୁକିଛୁ ଜୀବନର ପ୍ରୟୋଜନେ ଲାଗେ ।

